# କଳିଙ୍ଗର ଆତ୍ମକଥା

ଡକ୍ଟର ସତ୍ୟନାରାୟଣ ରାଜଗୁରୁ



ଓଡ଼ିଶା ସାହିତ୍ୟ ଏକାଡ଼େମୀ

# କଳିଙ୍ଗର ଆତ୍ମକଥା

ଡକ୍ଟର ସତ୍ୟନାରାୟଣ ରାଜଗୁରୁ




ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ୱର

# କଳିଙ୍ଗର ଆତ୍ମକଥା

**ଲେଖକ :**
ଡକ୍ଟର ସତ୍ୟନାରାୟଣ ରାଜଗୁରୁ
**ପ୍ରକାଶକ :**
ଓଡ଼ିଶା ସାହିତ୍ୟ ଏକାଡେମୀ
ଭୁବନେଶ୍ବର-୭୫୧୦୧୪
**ଦ୍ୱିତୀୟ ସଂସ୍କରଣ :**
୧୯୮୫ - ୧୧୦୦ ଖଣ୍ଡ
**ମୁଦ୍ରଣ :**
ବାସୁଦେବ ପ୍ରିଣ୍ଟର୍ସ,
ଭୁବନେଶ୍ବର-୭୫୧୦୦୩
ମୂଲ୍ୟ :
**ତିନି ଟଙ୍କା ମାତ୍ର**

# KALINGARA ATMAKATHA

**Written by :**
Dr. Satyanarayan Rajguru
**Published by :**
Orissa Sahitya Akademi
Bhubaneswar-751014
Second Edition-1985, 1100 Copies
**Printed by :**
Basudev Printers
Bhubaneswar-751003
Price :
**Rupees Three only**

# ଅଗ୍ରଲେଖ

'କଳିଙ୍ଗର ଆତ୍ମକଥା' କଳିଙ୍ଗ ଇତିହାସର ଆଧାର ଉପରେ ପ୍ରତିଷ୍ଠିତ । ନୀରସ ଐତିହାସିକ ବିବରଣୀକୁ ସାହିତ୍ୟିକ ଛଟାରେ ରୂପାୟିତ କରିଅଛନ୍ତି ଐତିହାସିକ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁ । ଇତିହାସ ରଚନାର ସତ୍ୟାନୁସଂଧାନ ଓ ସାହିତ୍ୟିକର ପ୍ରକାଶ-ଭଙ୍ଗୀ ଏଥିରେ ସମନ୍ୱିତ ହୋଇଅଛି । ପାଠକମାନଙ୍କର ଏହା ରୁଚିକର ହେବ, ଏଥିରେ ସନ୍ଦେହ ନାହିଁ । ଇତି ।'

ଭୁବନେଶ୍ୱର
୧୫ । ୯ । ୬୪

ସନ୍ତୋଷ କୁମାର ସାହୁ
ସଭାପତି

# କଳିଙ୍ଗର ଆତ୍ମକଥା

## ୧

ସେ ଗୋଟିଏ ବିରାଟ ବ୍ୟାପାର ! ତୁମେ ଯେତେବଡ଼ ବୈଜ୍ଞାନିକ ହୁଅନା କାହିଁକି, ସେ ବ୍ୟାପାରଟିକୁ କଳ୍ପନା କରି ପାରିବ ନାହିଁ । ଏକ ଭୟଙ୍କର ଗର୍ଜ୍ଜନ !!! ଏକକାଳୀନ କୋଟି କୋଟି ବଜ୍ର ନିର୍ଘୋଷ ତା ସହିତ ସମାନ ନୁହେଁ ! ସେହି ଗୁରୁ ଗମ୍ଭୀର ଗର୍ଜ୍ଜନମଧ୍ୟରେ ଆକାଶର ମହାଶୂନ୍ୟରେ ଏକ ବିରାଟ ଉଜ୍ଜ୍ୱଳ ଆଲୋକରାଶି ତୀବ୍ର ଗତିରେ ଘୂର୍ଣ୍ଣନ କରୁଥିଲା । ଓଃ ! କି ଭୀଷଣ ସେ ଦୃଶ୍ୟ ! କି ଉତ୍ତପ୍ତ ସେ ଆଲୋକ ! କି ପ୍ରଖର ସେ ଘୂର୍ଣ୍ଣନ !!!

ବହୁଯୁଗ ଅତୀତ ହୋଇଗଲା ସେ ଗର୍ଜନ, ସେ ଘୂର୍ଣ୍ଣନର ବିରାମ ନାହିଁ । ଦିନେ ହଠାତ୍ ଦେଖାଗଲା ପ୍ରଖର ବେଗରେ ଘୂରୁଥିବା ସେହି ରଶ୍ମିପୁଞ୍ଜମଧ୍ୟରୁ ଆଲୋକଗତିର ଲକ୍ଷ ଗୁଣ ବେଗରେ ଏକ କ୍ଷୁଦ୍ର ସ୍ଫୁଲିଙ୍ଗ ନିର୍ଗତ ହୋଇ, ଅନନ୍ତ ନୀଳିମା ଗର୍ଭରେ ଉଜ୍ଜ୍ୱଳ ପୁଚ୍ଛ ବିସ୍ତାର କରି, ନିମିଷକ ମଧ୍ୟରେ କେଉଁଆଡ଼େ ଅନ୍ତର୍ହିତ ହୋଇଗଲା । ଦେଖୁ ଦେଖୁ କିଛି କାଳ ପରେ ଆଉ ଏକ ସ୍ଫୁଲିଙ୍ଗ, ତାପରେ ଆଉ ଏକ; ଏହିପରି ବହୁ ସ୍ଫୁଲିଙ୍ଗ ସେଥିରୁ ବାହାରି ବିଭିନ୍ନ ଦିଗରେ ଉତ୍କ୍ଷିପ୍ତ ହୋଇଗଲେ । ସେଥିରୁ ଗୋଟିଏ ସ୍ଫୁଲିଙ୍ଗ ମଧ୍ୟରୁ ଏକ ଆଣବିକ ରଶ୍ମି ପରି ଅନନ୍ତ ଶୂନ୍ୟ ମଧ୍ୟଦେଇ ମୁଁ ଉଡ଼ି ଆସିଲି । ମନେ ନାହିଁ ସେ କେତେ ସହସ୍ର କୋଟି ବର୍ଷର କଥା ! ଯେଉଁ ଜାଜ୍ୱଲ୍ୟମାନ ସ୍ଫୁଲିଙ୍ଗମଧ୍ୟରେ ମୋର ଆତ୍ମପ୍ରକାଶ ହେଲା, ତାହା ଅତି କ୍ଷିପ୍ର ଗତିରେ ନିଜକକ୍ଷରେ ଘୂରି ଘୂରି ଆକାଶର ସେହି ବିରାଟ ଉଜ୍ଜ୍ୱଳ ଜ୍ୟୋତିପୁଞ୍ଜର ଚତୁର୍ଦ୍ଦିଗ ପ୍ରଦକ୍ଷିଣ କରିବାକୁ ଲାଗିଲା ।

ଲକ୍ଷ ଲକ୍ଷ ବର୍ଷ ସେହି ଅବସ୍ଥାରେ ବିତିଗଲା, କେଉଁଠାରେ କିଛି ଦୃଶ୍ୟମାନ ବସ୍ତୁର ସତ୍ତା ନଥିଲା । କେବଳ ଗୋଟିଏ ବିରାଟ ଶବ୍ଦ ସହିତ ଏକ ଉଜ୍ଜ୍ୱଳ ଆଲୋକର ସଂଘର୍ଷ; ପୃଥ୍ୱୀ ଅତି ଚଞ୍ଚଳ ଗତିରେ ଯେଉଁ ଘୂର୍ଣ୍ଣନ କ୍ରିୟା ମାତ୍ର ପରିଲକ୍ଷିତ ହେଉଥିଲା !

ବହୁ କାଳ ପରେ ଦେଖାଗଲା —ଆକାଶ ଗର୍ଭରେ ଏକ କ୍ଷୁଦ୍ର କୃଷ୍ଣ ବିନ୍ଦୁ ! ସେହି ବିନ୍ଦୁଟି ଧୀରେ ଧୀରେ ବଢ଼ିବାକୁ ଲାଗିଲା । ଜଣାଗଲା ମହାଶୂନ୍ୟରୁ ସତେ ଯେପରି କେହି ତଳକୁ ଖସି ଆସୁଛି । କେତେ କାଳ ପରେ ସେହି କୃଷ୍ଣ ବିନ୍ଦୁଟି କୁଜ୍‌ଝଟିକାରେ ପରିଣତ ହୋଇ ସମୁଦାୟ ଆକାଶକୁ ଆଚ୍ଛନ୍ନ କଲା । ଅଳ୍ପକ୍ଷଣେ ସକାଶେ ସେଥିରୁ କିଞ୍ଚିତ ଆର୍ଦ୍ରତା ବାୟୁ ବେଗରେ ଏ ଜଗତକୁ ସ୍ପର୍ଶ କରି ନିମିଷକେ ଉତ୍ତପ୍ତ ଜ୍ୟୋତିଃଗର୍ଭରେ ବିଲୀନ ହୋଇଗଲା । ତାହାପରେ ଆଉ ଏକ କୃଷ୍ଣ କୁଜ୍‌ଝଟିକା ପୂର୍ବପରି ଜ୍ୟୋତିପୁଞ୍ଜରେ ଅଦୃଶ୍ୟ ହେଲା । ବାରମ୍ବାର ଏପରି କୁଜ୍‌ଝଟିକା ଆକାଶରେ ଉଦିତ ହୋଇ ପୁଣି ବିଲୀନ ହେଲା । କେତେ କାଳ ପରେ ଦିନେ ସେଥିରୁ ଏକ ଘନକୃଷ୍ଣ ମେଘଖଣ୍ଡ ସମ୍ଭୂତ ହେଲା । ବାୟୁ ସଙ୍ଗେ ସଙ୍ଗେ ବିଦ୍ୟୁତ୍ ପ୍ରବାହ ଉତ୍‌ଥିତ ହୋଇ ଆକାଶରୁ ଅଳ୍ପକ୍ଷଣ ପାଇଁ ଅତି ସୂକ୍ଷ୍ମ ଜଳବିନ୍ଦୁ ବର୍ଷଣ କଲା ।

ଏହିପରି ଭାବରେ ବହୁଯୁଗ ଅତିବାହିତ ହୋଇଗଲା ପରେ, ମୁଁ ଅନୁଭବ କଲି ଆକାଶରୁ ସେହି ବାରିବର୍ଷଣ କ୍ରିୟା ଧୀରେ ଧୀରେ ବୃଦ୍ଧିଲାଭ କରୁଛି ଏବଂ ସେଥି ସଙ୍ଗେ ମଧ୍ୟ ଉତ୍ତାପର ମାତ୍ରା ଅପସାରିତ ହେଉଛି । କାଳକ୍ରମେ ଆକାଶରୁ ବାରିବର୍ଷଣ ଅବିରାମ ଗତିରେ ଚାଲିଲା ଏବଂ ତତ୍ ସଙ୍ଗେ ସଙ୍ଗେ ମଧ୍ୟ ପୃଥିବୀ ପୃଷ୍ଠରୁ ଉତ୍ତାପର ମାତ୍ରା କ୍ଷୀଣରୁ କ୍ଷୀଣତର ହେବାକୁ ଲାଗିଲା । ପ୍ରବଳ ବାରିବର୍ଷଣ ଫଳରେ ପୃଥିବୀ ଜଳପୂର୍ଣ୍ଣ ହୋଇଗଲା ଏବଂ ଚତୁର୍ଦ୍ଦିଗରେ ଭୀଷଣ ଗର୍ଜ୍ଜନ ସହିତ ଜଳପ୍ରବାହ ଉଦ୍‌ବେଳିତ ହେଲା; ତାହାଦ୍ୱାରା ପୃଥିବୀର ବହୁଅଂଶ ଜଳମଗ୍ନ ହୋଇ ଯାଇଥିଲା । ସେତେବେଳେ ମୁଁ ମୋର କ୍ଷୁଦ୍ର କାୟାଟି ନେଇ ପୃଥିବୀର ଗୋଟିଏ କୋଣରେ ଶାୟିତ ହୋଇଥିଲି ।

୨

ବିରାଟ ଭୂକମ୍ପଜନିତ ଜଳୋଚ୍ଛ୍ୱାସର ଭୀଷଣ ଗର୍ଜ୍ଜନରେ ମୋର ନିଦ୍ରାଭଙ୍ଗ ହେଲା । ମୁଁ ଦେଖିଲି, ଦିଗନ୍ତ ବ୍ୟାପୀ ନୀଳ ଜଳରାଶି ମୋର ପାର୍ଶ୍ୱଦେଶରେ ନୃତ୍ୟ କରୁଛି । ସେଥିରୁ ଉତ୍ତାଳ ତରଙ୍ଗାବଳୀ ଉତ୍ଥିତ ହୋଇ ମୋତେ ବାରମ୍ବାର ଆଘାତ ଦେଉଛି । ଅଳ୍ପକ୍ଷଣ ଲାଗି ମୁଁ ସେହି ତରଙ୍ଗାୟିତ ଜଳରାଶିର ଶୀତଳ ଗର୍ଭରେ ପୁଣି ଶାୟିତ ହେଲି ।

କେତେକାଳ ସେହି ଅବସ୍ଥାରେ ଅତୀତ ହୋଇଗଲା, ମୁଁ ଜାଣେ ନାହିଁ । କିନ୍ତୁ ପୁନର୍ବାର ଯେତେବେଳେ ମୋର ନିଦ୍ରା ଭଙ୍ଗହେଲା, ମୁଁ ବହୁ ନୂତନ ବସ୍ତୁ ଓ ଘଟଣା-

ମାନ ଦେଖିବାକୁ ଯାଇଲି । ଦେହର ଶୀଘ୍ରପ୍ରଶିଘ୍ର ପର, ମୋ ଅଙ୍ଗରେ ଅନେକ ନଦୀ ପ୍ରବାହିତ ହୋଇ ସେହି ତରଙ୍ଗାୟିତ ସମୁଦ୍ର ଗର୍ଭରେ ବିଲୀନ ହେଉଥିଲେ । ମୋର ପୃଷ୍ଠଦେଶରେ ବହୁ ଶିଳାପୁଞ୍ଜ ଉନ୍ନତ ଶିଖର ଟେକି ଯେପରି କି ସେହି ମନୋହର ଦୃଶ୍ୟ ଦେଖୁଥିଲେ । ସେହି ଗିରିଶିଳାସମୂହର ପାଦଦେଶରେ ଦୁର୍ଭେଦ୍ୟ ଅରଣ୍ୟାନୀ ସୃଷ୍ଟି ହୋଇଯାଇଥିଲା । ବିଭିନ୍ନ ଶ୍ରେଣୀର ତରୁଲତା ଯେଥିରେ ପରିଶୋଭିତ ହୋଇଥିଲେ । ଅସଂଖ୍ୟ ପଶୁପକ୍ଷୀ ମଧ୍ୟ ସେଠାରେ ବାସ କରୁଥିଲେ । ନୀଳ ସମୁଦ୍ର ଓ ନଦୀ ଗର୍ଭରେ ବହୁବିଧ ମତ୍ସ୍ୟକଚ୍ଛପ ଜୀବ ସଞ୍ଚରଣ କରୁଥିଲେ । ଏହି ସବୁ ପରିବର୍ତ୍ତନ ଦେଖି ମୋ ହୃଦୟ ଆନନ୍ଦରେ ପୁଲକିତ ହୋଇ ଉଠିଲା । ମୁଁ ଯେତେବେଳେ ଭାବିଲି ଯେ, ମୋର ନୀଳତ୍ୱ ପୃଥିବୀରେ କୋଣଲାଭ କରିଛି; ସେତେବେଳେ ହସ୍ତପାଦ ବିଶିଷ୍ଟ ଏକ ଅଦ୍ଭୁତ-ଜୀବ (ମନୁଷ୍ୟ) ମୋ ବକ୍ଷରେ ବାସକଲେ, ମୋର ସେହି ପୂର୍ବ ଭାବନାଟି ସତ୍ୟରେ ପରିଣତ ହେଲା ।

ସେହି ଅଦ୍ଭୁତ ଜୀବଟିପ୍ରତି ମୋର ଶ୍ରଦ୍ଧା ସ୍ୱତଃ ଜାଗ୍ରତ ହେଲା । କାରଣ, ସେ ବୁଦ୍ଧିମାନ ପ୍ରାଣୀ, ତାର ବୁଦ୍ଧିର ବିଚକ୍ଷଣତା ଯୋଗୁଁହିଁ ମୋର ଅଙ୍ଗରେ ବହୁ ପରିବର୍ତ୍ତନ ସମ୍ଭବ ହୋଇପାରିଛି । ମୋର ଏହି ଆତ୍ମକଥାରେ ସେହିମାନଙ୍କ ସମ୍ବନ୍ଧରେହିଁ କେତେକ ଘଟଣା କହିବି । ସେହି ଅଦ୍ଭୁତପ୍ରାଣୀ ଜଗତରେ 'ମନୁଷ୍ୟ' ନାମରେ ପରିଚିତ ।

କେବେ କେଉଁ ଭାଷା ଭାଷୀ ମନୁଷ୍ୟମାନେ ମୋର ନାମ 'କଳିଙ୍ଗ' ଦେଇଥିଲେ, ତାହା ମୋର ସ୍ମରଣ ନାହିଁ । ଅଦ୍ୟାପି ମଧ୍ୟ ମୋ ନାମର ପ୍ରକୃତ ଅର୍ଥ ସ୍ପଷ୍ଟ ହୋଇ ନାହିଁ । କିନ୍ତୁ ମୁଁ ସେହି ନାମରେ ବହୁକାଳ ପୃଥିବୀରେ ପରିଚିତ ହେଲି ।

ମୋ ବକ୍ଷର ଘୋର ଅରଣ୍ୟାନୀମଧ୍ୟରେ ଯେଉଁ ମନୁଷ୍ୟ ପ୍ରଥମେ ବାସ କଲେ, ସେମାନେ ଏ ଯାଏ ଏକ ଭାଷା ବ୍ୟବହାର କରୁଥିଲେ, ଯାହା ଅଳ୍ପ କେତେଗୁଡ଼ିଏ ଶବ୍ଦରେ ପରିପୂର୍ଣ୍ଣତା ଲାଭ କରିଥିଲା । ତଥାପି ସେମାନେ ତାଙ୍କର ଆବଶ୍ୟକୀୟ ଭାବଗୁଡ଼ି ସେହି ଭାଷାରେ ହିଁ ବ୍ୟକ୍ତ କରୁଥିଲେ । ସେହି ଆଦିମ ମନୁଷ୍ୟମାନେ ବିଭିନ୍ନ ଶିଳାପୁଞ୍ଜର ଗହ୍ୱରମଧ୍ୟରେ ବାସ କରୁଥିଲେ । ସେମାନଙ୍କ ଦେହର ବର୍ଣ୍ଣ ଘୋର କୃଷ୍ଣ, ଶରୀର ଲୋମଯୁକ୍ତ, ଜଙ୍ଘ ପେଶୀଯୁକ୍ତ ଓ ବଳିଷ୍ଠ; ନାସିକା କ୍ଷୁଦ୍ର, ମୁଖ ଶ୍ମଶ୍ରୁଯୁକ୍ତ । ହିଂସା ସେମାନଙ୍କର ସ୍ୱାଭାବିକ ଧର୍ମ !

ସିଂହ ବ୍ୟାଘ୍ରାଦି ଭୀଷଣ ଜନ୍ତୁମାନଙ୍କ ସହିତ ସେମାନେ ଯୁଦ୍ଧ କରୁଥିଲେ । ପର୍ବତରୁ ବିଶାଳ ଶିଳାଖଣ୍ଡ ଫିଙ୍ଗି ହସ୍ତୀ ଓ ଗଣ୍ଡାଦଳକୁ ସେମାନେ ବିତାଡ଼ିତ

କରୁଥିଲେ । ବୃକ୍ଷ ଶାଖାରେ ଝୁଲି ସେମାନେ ଗୋଟିଏ ସ୍ଥାନରୁ ଅନ୍ୟଏକ ନିକଟସ୍ଥ ସ୍ଥାନକୁ ସହଜରେ ଲମ୍ଫ ପ୍ରଦାନ କରିପାରୁଥିଲେ । ବାଉଁଶଖଣ୍ଡ ଧରି ଅନାୟାସରେ ସେମାନେ ଶୃଙ୍ଗବଦ୍ଧ ପଶୁମାନଙ୍କୁ ସଂହାର କରୁଥିଲେ । ଗଭୀର ଜଳରେ ପଶି କୌଶଳ-କ୍ରମେ ମତ୍ସ୍ୟ ଧରିନେଇ ଭକ୍ଷଣ କରିବା ସେମାନଙ୍କର ନିତ୍ୟପ୍ରତି ବ୍ୟାପାର ଥିଲା ।କେବଳ ମତ୍ସ୍ୟ ନୁହେଁ, ପଶୁପକ୍ଷୀମାନଙ୍କର ମାଂସ ମଧ୍ୟ ସେମାନେ ପଥରରେ ଚୂର୍ଣ୍ଣକରି, ତାହା-ଦ୍ୱାରା ଉଦର ପୋଷଣ କରୁଥିଲେ ।

ବହୁ କାଳ ଧରି ଏ ଜାତି ମୋ କୋଳରେ ବାସ କଲେ । କିନ୍ତୁ ପରେ, ଠିକ୍ ସେମାନଙ୍କପରି ଆଉ ଏକ ନଗ୍ନ ମନୁଷ୍ୟ ଜାତି ବିନ୍ଧ୍ୟାଚଳରୁ ଆସି ମୋ ବକ୍ଷରେ ଅନ୍ୟତ୍ର ଆଶ୍ରୟ ନେଲେ । ସେହି ନବାଗତ ମନୁଷ୍ୟମାନେ କେତେକ ନୂତନ ଉପାୟ ଓ କୌଶଳରେ ପାରଦର୍ଶିତା ଲାଭ କରିଥିଲେ । ସେମାନେ ଶୁଷ୍କ କାଷ୍ଠରେ ଅଗ୍ନି ସଂଯୋଗ କରି ଶୀତ ନିବାରଣ କରୁଥିଲେ । ମାଂସ ବ୍ୟତୀତ ବୃକ୍ଷର ଫଳ ଓ କନ୍ଦମୂଳାଦି ଭକ୍ଷଣ କରିବାକୁ ସେମାନେ ବିଶେଷ ଲାଳାୟିତ ଥିଲେ । ମାଂସକୁ ପୋଡ଼ି ଖାଇବା ସେମାନଙ୍କର ଅଭ୍ୟାସ ଥିଲା । ତା ସହିତ 'ସୋମରସ' ନାମକ ଏକପ୍ରକାର ପାନୀୟ ସେମାନେ ପାନକରି ଆନନ୍ଦିତ ହେଉଥିଲେ । ବନ୍ୟ ଜୀବ ବଧ କରିବାନିମନ୍ତେ ସେମାନେ ବିଭିନ୍ନ ପ୍ରକାର ଅସ୍ତ୍ର ପ୍ରସ୍ତୁତ କରୁଥିଲେ । ତନ୍ମଧ୍ୟରେ ଶାଣିତ ଶିଳାଖଣ୍ଡ ଓ ସୁତୀକ୍ଷ୍ଣ କାଷ୍ଠଖଣ୍ଡ ପ୍ରଧାନ ।

କେବେ କେବେ ସେମାନେ ଦଳବଦ୍ଧ ଭାବରେ ଶିକାର କରି, ଏକତ୍ର ବସି ପଶୁପକ୍ଷୀମାନଙ୍କର ମାଂସ ଭକ୍ଷଣ କଲାବେଳେ ସ୍ତ୍ରୀ ପୁରୁଷ ନିର୍ବିଶେଷରେ ଆନନ୍ଦରେ ନୃତ୍ୟକରୁଥିଲେ । ସେମାନଙ୍କମଧ୍ୟରେ ଅବାଧରେ ଯୌନବ୍ୟଭିଚାର ପ୍ରଚଳନ ଥିଲା ।

ଦିନେ ମୁଁ ଦେଖିଲି, ହଠାତ୍ ଦୁଇଦଳ ମଧ୍ୟରେ ଭୀଷଣ ଯୁଦ୍ଧ ସଂଘଟିତ ହେଲା; ଅବଶ୍ୟ ସେହି ଯୁଦ୍ଧପାଇଁ କୌଣସି କାରଣ ଥିବାର ମୁଁ ସନ୍ଧାନ ପାଇଲି ନାହିଁ । କେବଳ ବିକଟ ଚିତ୍କାର ସହିତ ସେମାନେ ପରସ୍ପରକୁ ବଧ କରିବାରେ ଲାଗିଲେ । ହଠାତ୍ ମୁଁ ଲକ୍ଷକଲି, ଗୋଟିଏ ଦୁର୍ବଳ ଦଳ ପଛଘୁଞ୍ଚା ଦେଇ ଆତ୍ମରକ୍ଷା ଉଦ୍ଦେଶ୍ୟରେ ପଳାଇଲେ ଓ ଅନ୍ୟ ଦଳଟି ତାକୁ ଗୋଡ଼ାଇବାରେ ଲାଗିଲେ । କିନ୍ତୁ କିଛି ସମୟ ପରେ ଦେଖାଗଲା, ପଳାୟିତ ଦଳର କେତେକ ଯୁବତୀ ବିଜୟୀ ଦଳର ପଥରୁଦ୍ଧ କରି ସେମାନଙ୍କସହିତ ମିଶି ନୃତ୍ୟ କଲେ ଓ ବାହୁପାଶରେ ସେମାନଙ୍କୁ ଆଲିଙ୍ଗନ କଲେ । ଏହା ଫଳରେ, ଦୁର୍ବଳମାନେ ସୁବିଧା ପାଇ ଶୀଘ୍ର ନିରାପଦ ସ୍ଥାନରେ ଆତ୍ମଗୋପନର ସୁବିଧା ପାଇଲେ ଓ ସେହି ସ୍ତ୍ରୀମାନେ କିଛିଦିନ ପରେ ଶତ୍ରୁଙ୍କୁ ପ୍ରତାରଣା କରି ନିଜ ଦଳ ଉଦ୍ଦେଶ୍ୟରେ ପଳାଇଗଲେ ।

ଏହିପରି ଭାବରେ ବହୁକାଳ ଅତୀତ ହେଲା । ସେହି ପାର୍ବତ୍ୟ ଜାତି ଗୁଡ଼ିକ ଧୀରେ ଧୀରେ କେତେକ ନୂତନ ତଥ୍ୟ ଆବିଷ୍କାର କଲେ । ମୃଗଚର୍ମରେ କିମ୍ବା ବୃକ୍ଷର ବକଳରେ ଅଙ୍ଗ ଆବୃତକରି ଶୀତ ତାପରୁ ନିଜକୁ ରକ୍ଷା କରିବା, ମୋର ସମତଳ ଓ ଢାଲୁ ଜାଗାରେ ବୀଜବପନ କରି ଶସ୍ୟ ଉତ୍ପାଦନ କରିବା, ବର୍ଷାଲାଗି ମନୁଷ୍ୟକୁ ବଳିଦେଇ ଶସ୍ୟକ୍ଷେତ୍ର ରକ୍ତରେ ଆର୍ଦ୍ର କରିବା, କାଷ୍ଠ ଓ ପାଷାଣରେ ଅଦୃଷ୍ଟ ଦେବତାଙ୍କର କଳ୍ପନା କରିବା ଆଦି ଅନେକ ନୂତନ ଉଦ୍ଭାବନ ସେମାନଙ୍କ ଦ୍ୱାରା ସମ୍ଭବ ହେଲା ।

## ୩

ବହୁକାଳ ଅତୀତ ହେଲାପରେ ହଠାତ୍ ଦେଖିଲି, ନୂତନ ପ୍ରକାରର ମନୁଷ୍ୟ ମୋ କୋଳରେ ଅବତୀର୍ଣ୍ଣ ହେଲେ । ସେମାନେ କ୍ଷୁଦ୍ରକାୟ, ରଙ୍ଗ ଈଷତ୍ ଲୋହିତାଭ, ମୁଖରେ ଦୀର୍ଘ ଶ୍ମଶ୍ରୁ ଗୁମ୍ଫ ଚକ୍ଷୁ ଉଜ୍ଜ୍ୱଳ, ନାସିକା ଈଷତ୍ ଉନ୍ନତ । ସେମାନେ ବଳୀବର୍ଦ୍ଦ ଓ ଗର୍ଦ୍ଦଭ ପୃଷ୍ଠରେ ଆବଶ୍ୟକୀୟ ବସ୍ତୁସମୂହ ବହନକରି ମୋ ପୃଷ୍ଠରେ ଅଧିଷ୍ଠାନ ଗ୍ରହଣ କରିବା ନିମିତ୍ତ ବହୁ ଦୂର ଦେଶରୁ ଦଳବଦ୍ଧ ଭାବରେ ଆସିଥିଲେ । ତାଙ୍କ ମୁଖ ଦେଖିଲେ ଜଣାଯାଉଥିଲା, ଚତୁରତାର ସହିତ ସେମାନେ ବିଭିନ୍ନ କୌଶଳରେ ପାରଦର୍ଶୀ । ଶତ୍ରୁ ସଙ୍ଗେ ଯୁଦ୍ଧ କରିବାକୁ ସେମାନେ ଯେପରି ସୁଦକ୍ଷଥିଲେ, ଠିକ୍ ସେହିପରି ବଳିଷ୍ଠ ଶତ୍ରୁ ସମ୍ମୁଖରୁ ଶୀଘ୍ର ପଳାୟନ କରିବାକୁ ଲଜ୍ଜାବୋଧ କରୁ ନଥିଲେ । ତାଙ୍କ ହସ୍ତରେ ଲୌହ ନିର୍ମିତ କୁଠାର ଓ ଧନୁଶର ଶୋଭା ପାଉଥିଲା । ସେମାନଙ୍କର ଶରସନ୍ଧାନ ମଧ୍ୟ ଅବ୍ୟର୍ଥ ବୋଲି ମନେ ହେଉଥିଲା । ସୁଦୂର ଦକ୍ଷିଣଭାରତରେ ଯେଉଁ ଭାଷା ବ୍ୟବହୃତ ହୁଏ, ସେହି ପ୍ରକାର ଭାଷା ବ୍ୟବହାର କରି ସେମାନେ ପରସ୍ପର ମଧ୍ୟରେ ଭାବ ବିନିମୟ କରୁଥିଲେ ।

ସେମାନେ ପ୍ରଥମେ ପାର୍ବତ୍ୟ ନିଗ୍ରୋ ମାନବଙ୍କୁ ସମତଳ ଅଞ୍ଚଳରୁ ବିତାଡ଼ିତ କରିଦେଲେ, କାରଣ ଭାରତରେ ଯେଉଁ ପଶ୍ଚିମୋତ୍ତର ପ୍ରଦେଶରେ ସେମାନେ ପୂର୍ବେ ବାସ କରୁଥିଲେ; ସେଠାରୁ ଠିକ୍ ଏହିପରି ଭାବରେ ଅନ୍ୟ ଏକ ବଳିଷ୍ଠ ଜାତିଦ୍ୱାରା ବିତାଡ଼ିତ ହୋଇଥିଲେ । ତେଣୁ ସେମାନେ ଶିକ୍ଷା ପାଇଥିଲେ ଯେ "ପୃଥିବୀ କେବଳ ବଳିଷ୍ଠ ଜାତିର ଭୋଗ୍ୟା" ।

ଦଳବଦ୍ଧ ଭାବରେ ଯେଉଁ ଜାତି ମୋ ବକ୍ଷରେ ପ୍ରବିଷ୍ଟ ହେଲେ, ସେମାନେ ଦ୍ରାବିଡ଼ ନାମରେ ପରିଚିତ । ସେମାନଙ୍କ ଦ୍ୱାରା ଅର୍ଜିତ ନୂତନ ସଭ୍ୟତା ଏଠାରେ ପ୍ରସାର

ଲାଭକଲେ । ବହୁଦଳେ ଏକତ୍ର ବାସ କରିବା, ବାସୋପଯୋଗୀ କୁଟୀରନିର୍ମାଣ କରିବା ଏବଂ ଯାତାୟାତର ସୁବିଧାନିମିତ୍ତ ରାସ୍ତାଘାଟ ପ୍ରସ୍ତୁତ କରିବା ସେମାନଙ୍କର ସାମାଜିକ ଅଭ୍ୟାସ ଥିଲା । ସେମାନେ ଉର୍ବିଦଳୀୟ ହୋଇଥିବାରୁ କୃଷିକର୍ମରେ ବେଶ୍ ଦକ୍ଷତାଲାଭ କରିଥିଲେ । ନାନାପ୍ରକାର ଫଳବୃକ୍ଷ ରୋପଣ କରି, ସେଥିରେ ଜୀବିକା ନିର୍ବାହ କରିବା ସେମାନଙ୍କର ଜାତୀୟ କର୍ମଥିଲା । ଆମୋଦ ପ୍ରମୋଦରେ କାଳ ଯାପନ କରିବାକୁ ସେମାନେ ପୁଣ୍ୟକର ମଣୁଥିଲେ । ବିଭିନ୍ନ ଆକୃତିର ପ୍ରତିମା ଗଠନ କରି, ସେଥିରେ ଦେବତ୍ୱ ଆରୋପ ପୂର୍ବକ ପୂଜା ଓ ଆରାଧନା କରିବାକୁ ସେମାନେ ପବିତ୍ର ଧର୍ମ ବୋଲି ମନେ କରୁଥିଲେ ।

ସେମାନେ ଏ ଦେଶରେ ଭାବପ୍ରକାଶର ଗୋଟିଏ ନୂତନ ଉପାୟ ପ୍ରବର୍ତ୍ତନ କରିଥିଲେ । ଯେଉଁ ଭାଷା ସେମାନେ ଉଚ୍ଚାରଣ କରୁଥିଲେ, ତାହା ଚିତ୍ର ସାହାଯ୍ୟରେ କିପରି ପତ୍ରପ୍ରକାଶ କରାଯାଇ ପାରେ, ସେଥିର ଉପାୟ ସେମାନେ ପୂର୍ବରୁ ଉଦ୍ଭାବନ କରିଥିଲେ । ତେଣୁ କ୍ରମେ ଚିତ୍ର ସାହାଯ୍ୟରେ ମନୋଭାବ ବ୍ୟକ୍ତ କରିବାରେ ସେମାନେ ଅଭ୍ୟସ୍ତ । ସେହି ଚିତ୍ର ଗୁଡ଼ିକରୁ ଆଧୁନିକ ଅକ୍ଷର ସୃଷ୍ଟି ହୋଇଛି । ପରବର୍ତ୍ତୀ ଯୁଗରେ ଶିକ୍ଷିତ ଆର୍ଯ୍ୟମାନେ ସେହି ଦ୍ରାବିଡୀୟ ସଭ୍ୟତାରୁ ଅନେକ ତଥ୍ୟ ଶିକ୍ଷା କରିଥିଲେ ।

ସେହି ଦ୍ରାବିଡ଼ ସମ୍ପ୍ରଦାୟ ବିଭିନ୍ନ ପ୍ରକାର ଗୃହପାଳିତ ପଶୁପକ୍ଷୀଙ୍କୁ ଯଥୋଚିତ ଶିକ୍ଷା ଦେଇ ନିଜ କାର୍ଯ୍ୟରେ ଲଗାଉଥିଲେ । ଗର୍ଦ୍ଦଭ ତାଙ୍କର ଭାର ବହନ କରୁଥିଲା, ବଲୀବର୍ଦ୍ଦ କୃଷିକାର୍ଯ୍ୟରେ ସାହାଯ୍ୟ କରୁଥିଲା । ହସ୍ତୀ ଓ ଅଶ୍ୱ ଏମାନେ ଯାନ ରୂପେ ବ୍ୟବହୃତ ହେଉଥିଲେ, ଶ୍ୱାନ ପ୍ରହରୀ କାର୍ଯ୍ୟରେ ନିଯୁକ୍ତ ଥିଲା, ମାର୍ଜାର ଲୋକମାନଙ୍କର ପ୍ରଧାନଶତ୍ରୁ ମୂଷିକମାନଙ୍କୁ ଧ୍ୱଂସ କରୁଥିଲା, ଗାଈ ଦୁଗ୍ଧ ଦାନକରି ଲୋକମାନଙ୍କୁ ବଳିଷ୍ଠ କରୁଥିଲା ଓ ଶୁକଶାରିକାଙ୍କର ସଙ୍ଗୀତ ତାନରେ ଲୋକମାନେ ଆନନ୍ଦରେ ବିହ୍ୱଳ ହୋଇ ଯାଉଥିଲେ । ପ୍ରକୃତିବୃତ୍ତିର ଏହି ପଶୁପକ୍ଷୀଙ୍କୁ ସେମାନେ ଯେଉଁ ଉପାୟରେ ଆୟତ୍ତ କରି ପାରିଥିଲେ, ଆଜି ସୁଦ୍ଧା ସେହି କ୍ରମରେ ବିଶେଷ କିଛି ବ୍ୟତିକ୍ରମ ଦେଖାଯାଉ ନାହିଁ । କିନ୍ତୁ ସେମାନେ ଯୋ ବକ୍ଷରେ ଋଦ୍ଧି ବହୁ ଉନ୍ନତି ସାଧନ କରିଥିଲେ ସେହି ବହୁକାଳ ମୋଠାରେ ତିଷ୍ଠି ପାରିଲେ ନାହିଁ । ଅନ୍ୟଏକ ବଳିଷ୍ଠଜାତିର ଆଗମନରେ ସେମାନେ ବନାଯୁଦ୍ଧରେ ଏ ସ୍ଥାନ ତ୍ୟାଗ କରିଗଲେ ।

## ୪

ଦିନେ, ଉତ୍କଳ ପ୍ରାନ୍ତରେ, ଅନ୍ୟଏକ ସଭ୍ୟ-ଶିକ୍ଷିତ-ସମ୍ପ୍ରଦାୟ ହସ୍ତୀ ଏବଂ ଉଷ୍ଟ୍ର ପୃଷ୍ଠରେ ଆସି ମୋ କୋଳରେ ଅବତୀର୍ଣ୍ଣ ହେଲେ । ସେମାନଙ୍କ ବର୍ଣ୍ଣ ଗୌର,

ମୁଖ ସୁନ୍ଦର, ଚେକାସ୍ଥାନ ଓ ଶ୍ମଶ୍ରୁ ଗୁମ୍ଫଯୁକ୍ତ; କେଶ ଦୀର୍ଘ—କୁଞ୍ଚିତ, ନାସିକା ଉନ୍ନତ, ନେତ୍ର ବିଶାଳ ଓ ଉଜ୍ଜ୍ୱଳ, ବପୁ ଦୃଢ଼, ବକ୍ଷ ଲୋମଯୁକ୍ତ, ବାହୁ ପେଶୀଯୁକ୍ତ । ସେମାନେ 'ଆର୍ଯ୍ୟ' ନାମରେ ପରିଚିତ ହେଉଥିଲେ । ସେମାନଙ୍କ ଆଗମନ ସମ୍ବାଦ ଶୁଣିବା ମାତ୍ରେ ବିନାଯୁଦ୍ଧରେ ଦ୍ରାବିଡ଼ମାନେ ଏଠାରୁ ଦକ୍ଷିଣ ଆଡ଼କୁ ପଳାୟନ କଲେ ।

ଆର୍ଯ୍ୟମାନଙ୍କ ହସ୍ତରେ ବର୍ଚ୍ଛା ଓ ଧନୁଶର ଶୋଭା ପାଉଥିଲା । ସେମାନେ ଯେପରି ବଳିଷ୍ଠ ସେହିପରି ଚତୁର ମଧ୍ୟ ଥିଲେ । ସେମାନଙ୍କ ଭାଷା ସଂସ୍କୃତ—ଆର୍ଯ୍ୟାବର୍ତ୍ତରେ ସର୍ବତ୍ର ପ୍ରଚଳିତ ହେଉଥିଲା । ସେମାନେ ପ୍ରଥମେ ଉପକୂଳବର୍ତ୍ତୀ ଅଞ୍ଚଳରେ ପର୍ବତ ନିକଟବର୍ତ୍ତୀ ସ୍ଥାନଗୁଡ଼ିକ ଭଲଭାବରେ ନିରୀକ୍ଷଣ କଲେ । ତା' ପରେ ସେମାନଙ୍କ ପ୍ରସନ୍ନମୁଖମଣ୍ଡଳ ଦେଖି ମୁଁ ବେଶ ବୁଝିପାରିଲି ଯେ, ସେମାନେ ମୋର ବକ୍ଷକୁ ଉପଯୁକ୍ତ ସ୍ଥାନ ବୋଲି ମନେ କରୁଛନ୍ତି ।

ଆର୍ଯ୍ୟମାନଙ୍କ ଜୀବନ ପାଶ୍ଚାତ୍ୟ ନେତାମାନଙ୍କ ଦେଶ ବିଦେଶ କର୍ମୀ ବ୍ୟକ୍ତି-ମାନଙ୍କ ପରି ସ୍ୱାର୍ଥପୂର୍ଣ୍ଣ ନଥିଲା । ସେମାନେ ପୃଥିବୀର ମଙ୍ଗଳ ଉଦ୍ଦେଶ୍ୟରେ ଜୀବନର ଯାହାକିଛି ପ୍ରିୟ ସମସ୍ତ ଉତ୍ସର୍ଗ କରିବାକୁ ପ୍ରସ୍ତୁତ ଥିଲେ । ତା, ସତ୍ତ୍ୱେ, ସେମାନେ ସାମାଜିକ ଆମୋଦ-ପ୍ରମୋଦରୁ ଦୂରରେ ନଥିଲେ ।

ମୋର ଉପକୂଳର ଏକ ନଦୀ ତଟରେ ପ୍ରଥମେ ସେମାନେ ବସତି ସ୍ଥାପନ କଲେ ଏବଂ ଦଳବଦ୍ଧଭାବରେ ଗୃହନିର୍ମାଣ କରି ଯଥାସମ୍ଭବ ସୁଖସ୍ୱଚ୍ଛନ୍ଦରେ କାଳ-ଯାପନ କରିବାକୁ ଲାଗିଲେ । ରାତ୍ରିରେ ଦୀପ ଜଳାଇ ସେମାନେ ଅନ୍ଧକାର ଦୂର କରୁ-ଥିଲେ । ଦିନରେ ସୂର୍ଯ୍ୟୋଦୟ ହେଲାକ୍ଷଣି, ପୂର୍ବଦିଗକୁ ସଶ୍ରଦ୍ଧଚିତ୍ତରେ ଚାହିଁ ସୂର୍ଯ୍ୟଦେବଙ୍କ ଠାରେ ଶ୍ରଦ୍ଧାଜ୍ଞାପନ କରୁଥିଲେ । ସେମାନେ କେବେ କେବେ ବନରୁ ମୃଗ ଶିକାର କରି ତା' ଚର୍ମରେ ଆସନ, ଶଯ୍ୟା ଓ ଶରୀର ରକ୍ଷା ନିମିତ୍ତ 'ଅଙ୍ଗରଖା' ପ୍ରଭୃତି ଆବଶ୍ୟକୀୟ ବସ୍ତୁ ପ୍ରସ୍ତୁତ କରୁଥିଲେ । ପ୍ରବଳ ଶୀତ ସମୟରେ ଶୁଷ୍କ କାଷ୍ଠଖଣ୍ଡ ଏକତ୍ରିତ କରି, ସେଥିରେ ଅଗ୍ନି ସଂଯୋଗପୂର୍ବକ ଅଗ୍ନିଦେବତାଙ୍କୁ ସାମୂହିକ ଭାବରେ ପ୍ରାର୍ଥନା କରୁଥିଲେ । ଅନ୍ଧକାରକୁ ସେମାନେ ଯେପରି ଭାବରେ ଘୃଣା କରୁଥିଲେ, ଉଜ୍ଜ୍ୱଳ ଆଲୋକକୁ ଠିକ୍ ସେହିପରି ଭାବରେ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।

ସେହି ଆର୍ଯ୍ୟମାନଙ୍କ ମଧ୍ୟରେ କେତେକ ନଗ୍ନ-ତପସ୍ୱୀ ଆଶ୍ରମମାନଙ୍କରେ ବାସ କରି ରହୁଥିଲେ । ସେମାନେ ନିର୍ଜନ ବନ ମଧ୍ୟରେ ଶୈଳାସନରେ ନିଶ୍ଚଳଭାବରେ ବହୁକ୍ଷଣ ବସିରହି ଧ୍ୟାନରେ ରତ ହେଉଥିଲେ । ଧ୍ୟାନ କରୁଥିବା ସମୟରେ ସେମାନଙ୍କ

ଚକ୍ଷୁ ଅର୍ଦ୍ଧ ନିମୀଳିତ, ଦେହ ନିଶ୍ଚଳ ଓ ନିସ୍ପନ୍ଦ ରହୁଥିଲା । ସେମାନେ ମୁଖ୍ୟତଃ ଫଳମୂଳ ଓ ପତ୍ରର ରସ ଦ୍ୱାରା ଜୀବନ ନିର୍ବାହ କରୁଥିଲେ । କେବେ କେବେ ନିଜର ଚତୁର୍ଦ୍ଦିଗରେ ଅଗ୍ନି ପ୍ରଜ୍ୱଳିତ କରାଇ, ମଧ୍ୟଭାଗରେ ବସି ଧ୍ୟାନମଗ୍ନ ହେଉଥିଲେ । ତେଣୁ ସେମାନଙ୍କ ଶରୀର ଅତ୍ୟନ୍ତ କୃଶ, ଭସ୍ମବିଭୂଷିତ ତଥା ମସ୍ତକ ଜଟାଭାରରେ ସୁଶୋଭିତ ଥିଲା । ଅହିଂସା ସେମାନଙ୍କର ପରମଧର୍ମ ଥିବାରୁ ହିଂସ୍ରଜନ୍ତୁଙ୍କୁ ସେମାନେ ଆଦୌ ଭୟ କରୁନଥିଲେ ଏବଂ ହିଂସ୍ରଜନ୍ତୁମାନେ ମଧ୍ୟ ସେମାନଙ୍କର କୌଣସି ଅନିଷ୍ଟସାଧନ କରୁ ନଥିଲେ । ସେହି ପୂର୍ବବର୍ଣ୍ଣିତ ମନୁଷ୍ୟମାନେ ତତ୍କାଳୀନ ସମାଜରେ 'ଋଷି' ନାମରେ ପରିଚିତ ଥିଲେ । ସେହି ଋଷିମାନେ ମାନବସମାଜର କଲ୍ୟାଣ ନିମିତ୍ତ ଯାବତୀୟ ସାଂସାରିକ ସୁଖ ଓ ଭୋଗ ତ୍ୟାଗକରି ଆଧ୍ୟାତ୍ମିକ ଚିନ୍ତାରେ ନିମଗ୍ନ ରହୁଥିଲେ । ତେଣୁ ସମାଜର ପ୍ରତ୍ୟେକ ବ୍ୟକ୍ତି ସେମାନଙ୍କୁ ଶ୍ରଦ୍ଧା ଓ ଭକ୍ତି କରୁଥିଲେ ।

ସେହି ଋଷିମାନଙ୍କ ପରିଚୟର ଗୋଟିଏ ଗୋଟିଏ ସଙ୍କେତ ଥିଲା । ଅଧିକାଂଶ କ୍ଷେତ୍ରରେ ସେହି ସଙ୍କେତ ପଶୁପକ୍ଷୀଙ୍କ ନାମ ସହିତ ସାମଞ୍ଜସ୍ୟ ଥିଲା । ଶୁକ କୌଶିକ, ଭରଦ୍ୱାଜ ପ୍ରଭୃତି ପକ୍ଷୀମାନଙ୍କ ନାମ ସହିତ କେତେକ ଋଷି ମଧ୍ୟ ନିଜ ନାମର ସଙ୍କେତ ରଖିଥିଲେ । ତେଣୁ ଆର୍ଯ୍ୟମାନେ ଯେଉଁ ପରିବାରର ଦାୟାଦ, ସେହି ପରିବାରର ସାଙ୍କେତିକ ଚିହ୍ନକୁ ନିଜର ଗୋତ୍ର ବା ବଂଶଚିହ୍ନ ରୂପେ ବ୍ୟବହାର କରନ୍ତି । ତା'ଦ୍ୱାରା ସେମାନଙ୍କ ମୂଳବଂଶର ପରିଚୟ ମିଳିଥାଏ ।

ଋଷିମାନଙ୍କର ବୁଦ୍ଧି-ବୃତ୍ତି ଓ ବିଚାରଶକ୍ତି ଅତି ପ୍ରଖର ଥିଲା । କାରଣ ସେମାନେ ଯୋଗବଳରେ ଚିନ୍ତାଶକ୍ତିକୁ ପରିମାର୍ଜିତ ଓ ପ୍ରସାରିତ କରି ପାରିଥିଲେ । ସେମାନଙ୍କ ଯୋଗୁଁ ଅନେକ ଶାସ୍ତ୍ର ଆର୍ଯ୍ୟସମାଜରେ ପ୍ରଚଳିତ ହୋଇଥିଲା । ସେହି ଶାସ୍ତ୍ରର ନିୟମାନୁସାରେ ସମାଜ ସୁଶୃଙ୍ଖଳ ଭାବରେ ପରିଚାଳିତ ହେଉଥିଲା। ମନୁଷ୍ୟ ପକ୍ଷରେ ଯାବତୀୟ କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ ଉକ୍ତ ଶାସ୍ତ୍ରମାନଙ୍କରେ ଲିପିବଦ୍ଧ ହୋଇଥିଲା । ଆର୍ଯ୍ୟମାନେ ସେହି ଶାସ୍ତ୍ର ଅନୁସାରେ ନିଜର ସମାଜସଂସ୍କାର କରିଥିଲେ ।

ଯେଉଁମାନେ ସେହି ଋଷିପ୍ରଣୀତ ଶାସ୍ତ୍ର ଉପରେ ଆସ୍ଥା ସ୍ଥାପନକରୁ ନ ଥିଲେ, ସେମାନଙ୍କୁ ମ୍ଳେଚ୍ଛ ବା ଅସୁର ନାମରେ ଅଭିହିତ କରାଯାଉଥିଲା, ଏବଂ ସେମାନେ ସମାଜରେ ଅତ୍ୟନ୍ତ ହେୟ ଓ ଘୃଣ୍ୟ ବିବେଚିତ ହେଉଥିଲେ । ତେଣୁ ସେମାନେ ସମାଜରେ ଅସ୍ପୃଶ୍ୟଜାତି ରୂପେ ହୀନ ଜୀବନ ଯାପନ କରୁଥିଲେ ।

ଆର୍ଯ୍ୟମାନେ ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗକରି ପ୍ରାତଃକୃତ୍ୟାଦି ସମାପନପୂର୍ବକ ନଦୀରେ ସ୍ନାନ କରୁଥିଲେ । ତତ୍ପରେ ସେମାନେ କାଷ୍ଠପାତ୍ରରେ ଜଳ ଆଣି ପିତୃପୁରୁଷଙ୍କ

ଉଦ୍ଦେଶ୍ୟରେ ତର୍ପଣ କରୁଥିଲେ ଏବଂ ଉଦୀୟମାନ ସୂର୍ଯ୍ୟଙ୍କ ସ୍ତୁତି ପାଠ କରୁଥିଲେ । ତା' ପରେ ସେମାନେ ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କରି ହୋମାଗ୍ନି ପ୍ରଜ୍ୱଳନ କରି, ଘୃତାହୁତି ଦେଉଥିଲେ । ନାରୀମାନେ ମଧ୍ୟ ପୁରୁଷମାନଙ୍କପରି ପ୍ରଭାତରୁ ଶଯ୍ୟା ତ୍ୟାଗ କରି, ସଦ୍ୟ ଗୋମୟ ଜଳରେ ଗୃହ ଓ ଚତ୍ୱର ଲେପନ କରି, ଶୌଚାଦି କ୍ରିୟା ସମାପ୍ତ କରୁଥିଲେ । ପରେ ପରିଚ୍ଛନ୍ନ ସଙ୍ଗେ ହୋମର ଯାବତୀୟ ବସ୍ତୁ ସଂଗ୍ରହ କରି ଗୃହସ୍ଥମାନଙ୍କୁ ସାହାଯ୍ୟ କରୁଥିଲେ । କୁଟୁମ୍ବରେ ପରସ୍ପର ପ୍ରତି ସ୍ନେହ, ମମତା ଓ ସୌହାର୍ଦ୍ଦ୍ୟ ରହିଥିବାରୁ, ତାହ ଶାନ୍ତିର ନିକେତନ ହୋଇଥିଲା ।

ଆର୍ଯ୍ୟମାନଙ୍କ ମଧ୍ୟରେ ସାମାଜିକ କର୍ମବଣ୍ଟନ ବିଧି ଅତି ଚମତ୍କାର ଥିଲା । ଯେଉଁ-ମାନେ ବେଦାଦିଶାସ୍ତ୍ର ଅଧ୍ୟୟନ କରି ବ୍ୟବସ୍ଥା ଦେଉଥିଲେ, ସେମାନେ 'ବ୍ରାହ୍ମଣ' ନାମରେ ପରିଚିତ ଥିଲେ । 'କ୍ଷତ୍ରିୟ' ସଂଜ୍ଞାଧାରୀ ଅନ୍ୟ ଏକ ଦଳ ନିଜର ଶାରୀରିକ ବଳ ଓ ଦକ୍ଷତା ଯୋଗୁଁ ସମାଜକୁ ଶତ୍ରୁମାନଙ୍କ ଆକ୍ରମଣରୁ ରକ୍ଷା କରୁଥିଲେ । ଅନ୍ୟ ଏକ ଦଳ ବାଣିଜ୍ୟ ଓ କୃଷିକର୍ମ କରି ଜୀବିକା ନିର୍ବାହ କରୁଥିଲେ । ସେମାନଙ୍କୁ 'ବୈଶ୍ୟ' ବୋଲି କୁହାଯାଉ ଥିଲା । ଯେଉଁମାନେ ଉକ୍ତ ତିନିଦଳର ପରିଚର୍ଯ୍ୟା କାର୍ଯ୍ୟରେ ନିଯୁକ୍ତ ଥିଲେ , ସେମାନେ 'ଶୂଦ୍ର' ରୂପେ ପରିଚିତ ହେଉଥିଲେ । ଏହିପରି ଚାରୋଟି ଶ୍ରେଣୀରେ ବିଭକ୍ତ ହୋଇ ଥିବାରୁ ଆର୍ଯ୍ୟମାନଙ୍କ ସାମାଜିକ ଜୀବନର ଶାନ୍ତି ଓ ଶୃଙ୍ଖଳା କେବେ ଛିନ୍ନ ହେଉ ନଥିଲା; ପରମ୍ପରାକ୍ରମେ ଉପରୋକ୍ତ ଜାତିର ବ୍ୟକ୍ତିମାନେ ଯେ ଯାହାର ନିର୍ଦ୍ଦିଷ୍ଟ କର୍ମ ସମ୍ପାଦନ କରୁଥିଲେ ।

ସାଧୁତା, ସହାନୁଭୂତି, ଦୟା, କ୍ଷମା, ତିତିକ୍ଷା ପ୍ରଭୃତି ସଦ୍‌ଗୁଣ, ଏବଂ ସର୍ବୋପରି ସତ୍ୟପ୍ରିୟତା ସେମାନଙ୍କର ଆଦର୍ଶ ଥିବାରୁ ସମାଜରେ ପୂର୍ଣ୍ଣ ଶାନ୍ତି ବିରାଜମାନ କରୁ-ଥିଲା । ସେମାନେ ନୀଳ ସାଗରର ତରଙ୍ଗମାଳା ଦେଖି ମୁଗ୍‌ଧ ହେଉଥିଲେ । ତେଣୁ ସିନ୍ଧୁ ମଧ୍ୟରେ ବରୁଣ ଦେବତାଙ୍କର କଳ୍ପନା କରିଥିଲେ । ଆକାଶର ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ ନକ୍ଷତ୍ରାବଳୀ ସହିତ ସେମାନେ ସୁପରିଚିତ ହେବାକୁ ଲାଳାୟିତ ଥିଲେ । ବାୟୁ ଓ ବର୍ଷାର ଆବଶ୍ୟକତା ହେତୁ ସେମାନେ ମରୁତ ଓ ଇନ୍ଦ୍ରଙ୍କର ଆରାଧନା କରୁଥିଲେ । ତତ୍ ସଙ୍ଗେ ସଙ୍ଗେ ମଧ୍ୟ ମୃତ୍ୟୁକୁ ସେମାନେ ଧର୍ମ ଆଖ୍ୟା ଦେଇଥିଲେ । ଏହିପରି ଭାବରେ ଶାନ୍ତ ଶିଷ୍ଟ-ଜୀବନ ଯାପନ କରି ସେମାନେ ବହୁକାଳ ମୋର ବକ୍ଷରେ ଆଶ୍ରୟ ନେଲେ ।

କିନ୍ତୁ ଦିନେ ଅପ୍ରତ୍ୟାଶିତ ଭାବରେ ଏକ ବିପଦ ଝଞ୍ଜା ଉତ୍ଥିତ ହୋଇ ସେମାନ-ଙ୍କର ଶୃଙ୍ଖଳିତ ସମାଜ ବନ୍ଧନକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେଲା । ସେହିବିପଦ-ବାତ୍ୟାର

ସମ୍ପୂର୍ଣ୍ଣହୀନ ହୋଇ ମୋ ବକ୍ଷରୁ ସେମାନେ ଉଠିଯାଇ ସୁଦୂର ଉତ୍ତର ଭାରତକୁ ପଳାୟନ କଲେ । ତା ପରେ ବହୁକାଳ ପର୍ଯ୍ୟନ୍ତ ସେମାନଙ୍କ ସହିତ ଆଉ ମୋର ସାକ୍ଷାତ ସମ୍ଭବ ହୋଇ ନାହିଁ । ସେ ଘଟଣାର ବହୁକାଳ ପରେ ମୁଁ ଶୁଣିଲି, କୌଣସି ଏକ ଋଷିଙ୍କ ଆଜ୍ଞାନୁସାରେ ସେମାନେ ବିନ୍ଧ୍ୟାଚଳ ଲଙ୍ଘନକରି ଦକ୍ଷିଣ ଦେଶକୁ ଯାତ୍ରା କରିବାକୁ ମନସ୍ଥ କରୁଥିବାରୁ ।



ମୋ ବକ୍ଷରୁ ସେମାନେ କାହିଁକି ଉଠିଗଲେ ସେ କଥା କହିବି । ଦିନେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ସିନ୍ଧୁତଟବର୍ତ୍ତୀ ବେଳାଭୂମିର ସୈକତସ୍ତୂପ ଉପରେ ବହୁଲୋକ ଋଣ୍ଡ ହୋଇ ସାଗରର ଦିଗ୍‌ବଳୟ ଆଡକୁ ଉତ୍ସୁକ ନୟନରେ ଦୃଷ୍ଟି ରହିଥିଲେ । ସେମାନଙ୍କ ଦୃଷ୍ଟି ଦୂରରେ ଭାସମାନ କେତେକ ନୂତନ ବସ୍ତୁ ଉପରେ ନିବଦ୍ଧଥିଲା । ଧୀରେ ଧୀରେ ସେହି ନୂତନ ବସ୍ତୁଗୁଡ଼ିକ କୂଳଆଡ଼କୁ ମାଡ଼ି ଆସିଲା । ପରେ ଜଣାଗଲା, ସେଗୁଡ଼ିକ ବିରାଟ ଜଳଯାନ,ତା ଉପରେ ଉଡ଼ୁଥିବା ପତାକାଗୁଡ଼ିକୁ ଦେଖି ଉପକୂଳ ବର୍ତ୍ତୀ ଆର୍ଯ୍ୟମାନେ ଚମତ୍କୃତ ହୋଇଗଲେ, କାରଣ ସେମାନେ କେବେ ହେଲେ ସେଭଳି ଭାସମାନ ତରୀ ନୀଳ ଜଳଧି ଗର୍ଭରେ ଦେଖି ନଥିଲେ ।

କ୍ରମେ ଜଳଯାନଗୁଡ଼ିକ କୂଳରେ ଆସି ପହଞ୍ଚିଲା । ତନ୍ମଧ୍ୟରୁ ବହୁ ପୀତବର୍ଣ୍ଣ ବଳିଷ୍ଠକାୟ ଯୁବକ ଅବତରଣ କଲେ । ସେମାନେ ତୀକ୍ଷ୍ଣ ଶକ୍ତୁପାଣ ଓ କୁନ୍ତ ପ୍ରଭୃତି ଅସ୍ତ୍ରଶସ୍ତ୍ରରେ ଭୂଷିତ ଥିଲେ । ସେମାନେ ନିଜ ମଧ୍ୟରେ ଯେଉଁ ଭାଷା ବ୍ୟବହାର କରୁଥିଲେ, ତାହା ଆର୍ଯ୍ୟମାନଙ୍କର ଅବୋଧ ଥିଲା । ସେମାନଙ୍କ ଚକ୍ଷୁ କ୍ଷୁଦ୍ର, ବାହୁପେଶୀଯୁକ୍ତ, କେଶ ପିଙ୍ଗଳ, ସୁଦୀର୍ଘକାୟ । ସେମାନେ ଅଦ୍ଭୁତ, ଚର୍ମ ପୋଷାକରେ ନିଜକୁ ଭୂଷିତ କରିଥିଲେ । ତାଙ୍କ ମୁଖମଣ୍ଡଳରୁ ହିଂସାପୂର୍ଣ୍ଣ ଦାମ୍ଭିକତା ଓ ଚତୁରତାର ଆଭାସ ମିଳୁଥିଲା, ଏବଂ ବ୍ୟବହାର ରୁକ୍ଷ ଓ ବଚନ ଅତ୍ୟନ୍ତ କର୍କଶ ଥିଲା ।

ଉପକୂଳରେ ପ୍ରବିଷ୍ଟ ହେବାକ୍ଷଣି ଆର୍ଯ୍ୟମାନଙ୍କ ପ୍ରତି ସେମାନଙ୍କର ନିର୍ମମ ଅତ୍ୟାଚାର ଆରମ୍ଭ ହୋଇଗଲା । ପ୍ରତି-ଆକ୍ରମଣ କରିବାକୁ ଆର୍ଯ୍ୟସମ୍ପ୍ରଦାୟ ଖୁବ୍

ଚେଷ୍ଟାକଲେ । ସିକତ ମସୃଣ ବେଳାଭୂମିରେ ତୁମୁଳ ସଂଗ୍ରାମ ଆରମ୍ଭ ହେଲା । କିନ୍ତୁ ନବାଗତଙ୍କର ନୂତନ ଅସ୍ତ୍ରଶସ୍ତ୍ର ଓ ନୃଶଂସତା ସମ୍ମୁଖରେ ଆର୍ଯ୍ୟ-କ୍ଷତ୍ରିୟମାନେ ଅଧିକ ସମୟ ତିଷ୍ଠି ପାରିଲେ ନାହିଁ । କ୍ରମେ ନବାଗତଙ୍କ ରଣ କୌଶଳରେ ସେମାନେ ଲେଲିହାନ ଅଗ୍ନିଶିଖାରେ ପତଙ୍ଗ ପରି ଝାସ ଦେବାକୁ ଲାଗିଲେ । ତାହାପରେ ସେହି ନୃଶଂସ ବୈଦେଶିକମାନେ ଆର୍ଯ୍ୟମାନଙ୍କୁ ନିଶ୍ଚିହ୍ନ କରି, ସେମାନଙ୍କ ପଲ୍ଲୀ ଗୁଡ଼ିକରେ ଅଗ୍ନି ସଂଯୋଗ କରି ଧ୍ୱଂସ କରିଦେଲେ । ତଦବଧି ବୈଦିକ ମନ୍ତ୍ରପାଠ, କୁଳସ୍ତ୍ରୀମାନଙ୍କର ଗୋମୟଲେପନ କ୍ରିୟା ଓ ପୁଷ୍ପପତ୍ରାଦି ଆହରଣ କିମ୍ବା ସ୍ୱଚ୍ଛସଲିଳା ନଦୀତଟରେ ପ୍ରଭାତ-କାଳରୁ ମଧୁର ସ୍ତୁତିପାଠ ଆଉ ଶୁଣାଗଲା ନାହିଁ ।

ନବାଗତ ସେହି ବୈଦେଶିକମାନେ ମୋ ବକ୍ଷରେ ଏପରି ସବୁ ନିଷ୍ଠୁର କାର୍ଯ୍ୟ ଆରମ୍ଭକଲେ ଯାହାଫଳରେ କି ବନବାସୀ ଓ ଉପକୂଳବାସୀ ସମସ୍ତେ ଭୟଭୀତ ହୋଇ ସେମାନଙ୍କ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟହେଲେ । ତାଙ୍କ ପ୍ରବର୍ତ୍ତିତ ଧର୍ମ ଏବଂ ଆଚାର ପଦ୍ଧତି କ୍ରମେ ଏ ଦେଶବାସୀଙ୍କ ମଧ୍ୟରେ ପ୍ରଚଳିତ ହେଲା । ସେମାନେ ସୂର୍ଯ୍ୟ,ଅଗ୍ନି ଓ ନାଗଙ୍କୁ ଆରାଧନା କରୁଥିଲେ, ତାହା ସ୍ଥାନୀୟ ଅଧିବାସୀମାନେ ଧୀରେ ଧୀରେ ଅନୁକରଣ କଲେ ।

ସେହି ବୈଦେଶିକମାନେ ଏ ଦେଶକୁ ତାଙ୍କ ନିଜ ଅଞ୍ଚଳର ସାମାଜିକ ସଂସ୍କୃତି ସହିତ କଳା କୌଶଳାଦି ଆନୟନ କରିଥିଲେ । କାଳକ୍ରମେ ତାହା ଏ ଦେଶର ସମ୍ପଦରେ ପରିଣତ ହେଲା । ତାଙ୍କଦ୍ୱାରା ନିର୍ମିତ ବହୁଦୁର୍ଗ ଓ ପ୍ରାସାଦ ଏ ଦେଶରେ ସ୍ଥାନେ ସ୍ଥାନେ ମୁଣ୍ଡଟେକି ଉଠିଲା । ସେଗୁଡ଼ିକ ବହୁକାଳ ପର୍ଯ୍ୟନ୍ତ ଏ ଦେଶବାସୀଙ୍କୁ ସେହି ବୈଦେଶିକଙ୍କ କଳା-ସଂସ୍କୃତି ଆଦି ବିଷୟରେ ସଚେତନ କରି ରଖିଥିଲା ।

ସେହି ଅତ୍ୟାଚାରୀ ବୈଦେଶିକମାନେ ବହୁକାଳ ପର୍ଯ୍ୟନ୍ତ ମୋ ବକ୍ଷରେ ଆଧିପତ୍ୟ ବିସ୍ତାର କରି ପାରିଲେ ନାହିଁ । କାରଣ, ସେତେବେଳେ ମୋ ପୃଷ୍ଠରେ ଯେଉଁ ଘୋ ୟାନୀ ଥିଲା, ସେଥିମଧ୍ୟରୁ ପାର୍ବତ୍ୟ ବର୍ବରଜାତି ଦଳବଦ୍ଧଭାବରେ ସମତଳ ପ୍ରଦେଶରେ ଅପ୍ରତ୍ୟାଶିତ ଭାବରେ ଦେଖାଦେଇ ନବାଗତ ସମ୍ପ୍ରଦାୟକୁ ବ୍ୟତିବ୍ୟ କରିବାକୁ ଲାଗିଲେ । ସମ୍ଭବତଃ କୌଣସି ଏକ ଅଜ୍ଞାତଶକ୍ତି ସେମାନଙ୍କୁ ପ୍ରୋତ୍ସାହନ ଦେ ବୈଦେଶିକ ଶକ୍ତି ବିରୁଦ୍ଧରେ ମତାଉଥିଲା ।

ସେଥିର ସତ୍ୟତା ମଧ୍ୟ ଦିନେ ପ୍ରମାଣିତ ହେଲା । ଯେତେବେଳେ ସେହି ବୈଦେଶିକ ଅତ୍ୟାଚାରୀଦଳ ମୋ ବକ୍ଷରୁ ସମ୍ପୂର୍ଣ୍ଣରୂପେ ବିତାଡ଼ିତ ହେଲେ, ସେତେ

ବେଳେ ଜଣେ ମୁକୁଟଧାରୀ ବୀରପୁରୁଷ ଘୋର ଅରଣ୍ୟର ଅନ୍ତରାଳରୁ ଆସି ଉପକୂଳ ପ୍ରଦେଶରେ ଆତ୍ମପ୍ରକାଶ କଲେ । ତାଙ୍କ ଶିରୋପରି ଗୋଟିଏ ସୁନ୍ଦର ଛତ୍ର ଉତ୍ତୋଳିତ ହୋଇଥିଲା ଏବଂ ସେ ଦ୍ରାବିଡ଼ ଶ୍ରେଣୀୟ ବହୁ ଯୋଦ୍ଧାଙ୍କ ଗହଣରେ ସଗର୍ବରେ ମସ୍ତକ ଉଠାଇ ବୁଲୁଥିଲେ । ସେ ପାର୍ବତୀୟ ଜାତିଗୁଡ଼ିକୁ ଆୟତ୍ତକରି ସେମାନଙ୍କ ସାହାଯ୍ୟରେ ସମସ୍ତ ବୈଦେଶିକ ଶକ୍ତିକୁ ପରାସ୍ତ କରି, ସମସ୍ତ ଦୁର୍ଗ ପ୍ରସାଦାଦି ହସ୍ତଗତ କଲେ । ଧୀରେ ଧୀରେ ତାଙ୍କ ଆଧିପତ୍ୟ ମୋ ବକ୍ଷରେ ସ୍ଥାପିତ ହେଲା ଓ ସେ ରାଜ୍ୟବିସ୍ତାର ଆରମ୍ଭ କଲେ । ସେହି ବୀରମାନେ 'ଚେଦି' ନାମରେ ମୋ ବକ୍ଷରେ ପରିଚିତ ହେଲେ । ସେମାନେ ନିଜର ବୁଦ୍ଧି ବଳରେ, ପୂର୍ବରେ ଗଙ୍ଗାଠାରୁ ଆରମ୍ଭ କରି ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଏକ ବିରାଟ ସାମ୍ରାଜ୍ୟ ସ୍ଥାପନ କଲେ ।

'ଚେଦି' ମାନଙ୍କର କାର୍ଯ୍ୟକୁଶଳତା ଓ ସୁଶାସନ କ୍ରମେ ପ୍ରସାର ଲାଭକଲା । ତାହା ଶୁଣି ବିଭିନ୍ନଦେଶରୁ ପ୍ରଜାପୁଞ୍ଜ ଆସି ମୋ ବକ୍ଷରେ ବସତି ସ୍ଥାପନ କରିବାକୁ ଲାଗିଲେ । କ୍ରମେ ମୋର ସମଗ୍ର ଶରୀର ଜନ ବସତିରେ ପୂର୍ଣ୍ଣ ହେଲା । ବହୁ ଗ୍ରାମ ଓ ଜନପଦ ଗଠିତ ହେଲା । ତାହା ଫଳରେ ରାଜକୋଷ ପୂର୍ଣ୍ଣ ହୋଇ ଦେଶ ବିଦେଶରେ ଚେଦିମାନଙ୍କ ସମ୍ମାନ ବୃଦ୍ଧି ଲାଭକଲା । ସ୍ଥାନେ ସ୍ଥାନେ ଦେବାଳୟ, ପୁଷ୍କରିଣୀ ପାନ୍ଥଶାଳା, ଉଦ୍ୟାନ ଓ ରାଜପଥ ପ୍ରଭୃତି ନିର୍ମିତ ହୋଇ ମୋର ଅଙ୍ଗ ଅଶେଷ ଶୋଭାରେ ପୂର୍ଣ୍ଣ ହେଲା । ମୋର ସେ ପ୍ରକାର ସୌଭାଗ୍ୟ ବୃଦ୍ଧିରେ ଈର୍ଷ୍ୟାନ୍ୱିତ ହୋଇ ଭାରତର ପ୍ରତି ଅଞ୍ଚଳର ଶାସକମାନେ ମୋ ପ୍ରତି ସତୃଷ୍ଣନେତ୍ରରେ ଚାହିଁ ରହିଲେ । ତା'ଫଳରେ ମୋର ସୌଭାଗ୍ୟ ଅଧିକକାଳ ଉଜ୍ଜ୍ୱଳମୟ ହୋଇ ରହିପାରିଲା ନାହିଁ । ଅଳ୍ପକାଳ ପରେ ମୋ ବକ୍ଷରେ ବିପଦର ଯେଉଁ ହୁମୁଳ ବାତ୍ୟା ବହିଲା, ସେଥିରେ ଦଗ୍ଧ ମୋର ସନ୍ତାନଗଣ ବହୁ ନିର୍ଯ୍ୟାତନା ଭୋଗକଲେ । ସେ କଥା ମୋର ମନେ ପଡ଼ିଲେ ଆଜି ବି ରୋମ ଟାଙ୍କୁରି ଉଠେ । ସେହି ମର୍ମନ୍ତୁଦ କାହାଣୀ ଶୁଣିଲେ ଯେ କୌଣସି ଲୋକ ଶୋକରେ ଅଭିଭୂତ ହୋଇଯିବ । ସେଦିନ ମୁଁ ସ୍ପଷ୍ଟ ବୁଝିପାରିଲି, ସୁଖର ସୌନ୍ଦର୍ଯ୍ୟହିଁ ଦୁଃଖର ବୀଭତ୍ସତା ସୃଷ୍ଟି କରେ; ସମ୍ପଦହିଁ ବିପଦର ମୂଳ କାରଣ !!

୬

ଆଜି ମୋର ମନେ ପଡ଼ୁଛି ସେ ଦିନଟି, ଯେବେ ହର୍ଷୋତ୍ଫୁଲ୍ଲ ଚିତ୍ତରେ ବୀର-ସନ୍ତାନଗଣ ଅଶ୍ୱପୃଷ୍ଠରେ ନିର୍ଭୀକ ଭାବରେ ବିଚରଣ କରୁଥିଲେ, [illegible]

ଆନନ୍ଦରେ କାଳଯାପନ କରୁଥିଲେ, ଉତ୍ସବ ତରଙ୍ଗରେ ଦେଶ ପ୍ଲାବିତ ହେଉଥିଲା, ଧନ-ସମ୍ପଦରେ ପ୍ରତି ପୁରପଲ୍ଲୀ ଉଜ୍ଜ୍ୱଳ ଉଠୁଥିଲା; 'ଅଭାବ' ଶବ୍ଦ କେବଳ ଅଭିଧାନର କଳେବର ବୃଦ୍ଧି କରୁଥିଲା !!! କିନ୍ତୁ ହାୟ ! ଶେଷରେ ପରିଣତି କଣ ହେଲା?

ମୋର ସେହି ନିର୍ମଳ ପ୍ରଶାନ୍ତ ଆକାଶ ସହସା ମେଘାଚ୍ଛନ୍ନ ହେଲା । ଦିନେ ମଗଧର ମୌର୍ଯ୍ୟବଂଶୀୟ ସମ୍ରାଟ ଅଶୋକ ମୋର ସ୍ୱାଧୀନତା ତାଙ୍କର ପଦାନତ କରିବା ଲାଗି ଜଣେ୍କ ଦୂତ ହସ୍ତରେ ସମ୍ବାଦ ପଠାଇଲେ । ସେ ଦିନଟି ମୋ ପକ୍ଷରେ ସବୁଠାରୁ ଦୁଃଖଦାୟକ ଦିବସ ଥିଲା । ଏ ସମ୍ବାଦ ପାଇ କଳିଙ୍ଗରାଜା ସେହି ଦୂତ ହସ୍ତରେ ବାର୍ତ୍ତା ପ୍ରେରଣ କରି କହିଥିଲେ, "ଯଦି ମଗଧ ରାଜାଙ୍କର ନିଜ ସ୍ୱାଧୀନତା ପ୍ରତି ମମତା ଥାଏ, ତା'ହେଲେ ସେ ଏହି ପ୍ରକାର ଔଦ୍ଧତ୍ୟ ପରିହାର କରି 'ଅଶୋକ' ହୋଇ ରହନ୍ତୁ" ।

ଏ ଘଟଣା ପରେ ଦିନେ ଦେଖାଗଲା— ବହୁସଂଖ୍ୟକ ମାଗଧ ସୈନ୍ୟ ମୋ ଦେଶ ବିରୁଦ୍ଧରେ ଯୁଦ୍ଧଯାତ୍ରା ଆରମ୍ଭ କରିଛନ୍ତି । ସେମାନଙ୍କ ଅଭିଯାନରେ ମୋର ପୃଷ୍ଠଦେଶ ଆକ୍ରାନ୍ତ ହୋଇଗଲା । ଗନ୍ଧବତୀରେ ପର୍ବତ ତଟରେ ରଣକ୍ଷେତ୍ର ପ୍ରସ୍ତୁତ ହେଲା । ନଦୀର ଉଭୟ ତଟରେ ଲକ୍ଷ ଲକ୍ଷ ସୈନ୍ୟ ସଜ୍ଜିତ ହୋଇ ରହିଲେ । ଶତ୍ରୁ ପକ୍ଷର ରଣ ଦୁନ୍ଦୁଭି ନିନାଦିତ ହେଲା । ଦୁର୍ଦ୍ଧର୍ଷ କଳିଙ୍ଗ ସୈନ୍ୟ ପୃଥିବୀରେ ଅଜେୟ ବୋଲି କଳିଙ୍ଗ ରାଜାଙ୍କ ମନରେ ବଦ୍ଧମୂଳ ଧାରଣା ହୋଇଥିଲା ।

ମଗଧରାଜ ଅଶୋକ ଜଣେ କ୍ରୂର, ହୃଦୟହୀନ ଓ ଚତୁର ଶାସକ ଥିଲେ । ତାଙ୍କ ସୈନ୍ୟ ପରିଚାଳନା ନିମନ୍ତେ କେତେକ ସୁଦକ୍ଷ ଗ୍ରୀକ୍‌ବୀର ନିଯୁକ୍ତ ହୋଇଥିଲେ । ସେମାନଙ୍କ ରଣନୀତି ମଧ୍ୟ ପ୍ରାଚୀନ ଭାରତର ରଣ ନୀତି ଠାରୁ ପୃଥକ୍ ଥିଲା । ସମ୍ମୁଖରେ ସୁସଜ୍ଜିତ କଳିଙ୍ଗ ବୀରମାନଙ୍କୁ ଦେଖି ସେହି ଗ୍ରୀକ୍‌ବୀର ମାନେ ମନେ ମନେ ପ୍ରମାଦ ଗଣିଲେ । ସମ୍ମୁଖ ଯୁଦ୍ଧରେ କଳିଙ୍ଗ ସେନାଙ୍କୁ ପରାସ୍ତ କରିବା ସହଜ ସାଧ୍ୟ ନୁହେଁ, ଏକଥା ସେମାନେ ନିଜ ମଧ୍ୟରେ ମନ୍ତ୍ରଣା କରି କୂଟନୈତିକ ଉପାୟ ଅବଲମ୍ବନ କରିବାକୁ ସୁଯୋଗ ଅନ୍ୱେଷଣ କଲେ । ସତ୍‌ମାର୍ଗ ହେଉ ବା ଅସତ୍‌ମାର୍ଗ ହେଉ ଯେ କୌଣସି ଉପାୟରେ ଯୁଦ୍ଧ ଜୟ କରି ଅଶୋକଙ୍କୁ ବିଜୟଶ୍ରୀରେ ଭୂଷିତ କରିବା ଥିଲା ସେମାନଙ୍କର ମୁଖ୍ୟ ଅଭିଳାଷ ।

ଏହା ଯେଉଁ ସମୟର ଘଟଣା, ସେତେବେଳେ ଯୁଦ୍ଧକାଳୀନ କେତେକ ନୀତି-ନିୟମ ପ୍ରତ୍ୟେକ ଯୋଦ୍ଧା ପାଳନ କରୁଥିଲେ । ସାଧାରଣତଃ ନିରସ୍ତ୍ର କିମ୍ବା ସୁପ୍ତ ସୈନିକ ଉପରେ ଅସ୍ତ୍ର ପ୍ରୟୋଗ କରିବା ନାହିଁ; ଏ ନିୟମର ବ୍ୟତିକ୍ରମ ଘୋର ପାପ ଓ ନିନ୍ଦିତ

କର୍ମ ବୋଲି ସମସ୍ତେ ଜାଣିଥିଲେ । ତେଣୁ ଯୁଦ୍ଧଶେଷରେ, ରାତି ସମୟରେ ଯୋଦ୍ଧାମାନେ ନିଜ ନିଜର ଅସ୍ତ୍ରଶସ୍ତ୍ର କୌଣସି ଏକ ସ୍ଥାନରେ ରଖିଦେଇ ନିଶ୍ଚିନ୍ତ ହୋଇ ଶୟନ କରୁଥିଲେ; ପୁଣି ପ୍ରଭାତରେ ଉଠି ନିଜ ନିଜର ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧରେ ପ୍ରବୃତ୍ତ ହେଉଥିଲେ ।

ଏହି ଆଦମ ଭାରତୀୟ ଯୁଦ୍ଧନୀତିର ବ୍ୟତିକ୍ରମ ସର୍ବପ୍ରଥମେ ଅଶୋକଙ୍କର କଳିଙ୍ଗ ଯୁଦ୍ଧରେ ଘଟିଲା । କଳିଙ୍ଗର ସୈନ୍ୟମାନେ ଗନ୍ଧବତୀର ଦକ୍ଷିଣତଟସ୍ଥ ସ୍କନ୍ଧାବାରରେ ସେମାନଙ୍କ ଅସ୍ତ୍ରଶସ୍ତ୍ର ଗୁଡ଼ିକ ଏକତ୍ରରଖି ଦ୍ୱିଧାଶୂନ୍ୟ ଚିତ୍ତରେ ଶୟନକଲେ । ତା'ପରେ ସେହି ଗଭୀର ନିଶିଥରେ ଗ୍ରୀକ୍ ସେନାପତି କୌଶଳକ୍ରମେ କେତେକ ବିଶ୍ୱସ୍ତ ଅନୁଚରଙ୍କ ସହ ଗନ୍ଧବତୀର ଦକ୍ଷିଣତଟସ୍ଥ ସ୍କନ୍ଧାବାରଟି ହସ୍ତଗତ କରିନେଲେ । ତା'ପରେ ସ୍ୱୀୟ ସୈନ୍ୟମାନଙ୍କୁ ଯୁଦ୍ଧନିମିତ୍ତ ପୁଣି ସଜାଗ କରାଇ ଢକ୍କା ଓ ଭେରୀବାଦନ ପୂର୍ବକ କଳିଙ୍ଗ ସୈନ୍ୟମାନଙ୍କ ନିଦ୍ରାଭଙ୍ଗ କଲେ । ରଣନୀତିର ସେ ପ୍ରକାର ଘୋର ବ୍ୟତିକ୍ରମରେ କଳିଙ୍ଗ ସୈନ୍ୟମାନେ ହାହା-କାର କରିବାକୁ ଲାଗିଲେ । ଗୋଟିଏ ପକ୍ଷରେ କଳିଙ୍ଗର ଲକ୍ଷ ଲକ୍ଷ ନିରସ୍ତ୍ରସୈନ୍ୟ , ଅନ୍ୟ ପକ୍ଷରେ ମଗଧର ସୁଶିକ୍ଷିତ ଓ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ବିରାଟସେନା । ଯୁଦ୍ଧର ଫଳାଫଳ କ'ଣ ହୋଇପାରେ ତାହା ସହଜେ ଅନୁମେୟ । ବିଦେଶୀଗ୍ରୀକ୍ ସେନାଧ୍ୟକ୍ଷଙ୍କ ଆଦେଶକ୍ରମେ କଳିଙ୍ଗର ନିରସ୍ତ୍ର, ନିସହାୟ ସୈନ୍ୟମାନଙ୍କୁ ସେହି ଅନ୍ଧକାର ମଧ୍ୟରେ ନିର୍ମମଭାବରେ ହତ୍ୟା କରାଗଲା । ଲକ୍ଷାଧିକ ବୀର ବିନାଯୁଦ୍ଧରେ ପ୍ରାଣବିସର୍ଜନକଲେ ଏବଂ କେତେକ ସୈନ୍ୟ ଚିରଦିନ-ଲାଗି ପଙ୍ଗୁ ହୋଇଗଲେ । ସେହି ହୃଦୟହୀନ ହତ୍ୟାବ୍ୟାପାର ଦ୍ୱିସହସ୍ର ବର୍ଷ ପରେ ଆଜି-ଯାଏଁ ମୋ ମାନସପଟରୁ ଲିଭି ନାହିଁ ।

ମଗଧରାଜ ସମ୍ରାଟ ଅଶୋକ ବିଜୟଶ୍ରୀରେ ମଣ୍ଡିତ ହେଲେ ସତ୍ୟ, କିନ୍ତୁ ସେ ହୃଦୟବିଦାରକ ଦୃଶ୍ୟ ତାଙ୍କ ସୂକ୍ଷ୍ମ ପ୍ରାଣତନ୍ତ୍ରୀରେ ଭୀଷଣ ଆଘାତ ଦେଲା । ତା'ଫଳରେ ତାଙ୍କର ପାଷାଣ ହୃଦୟ ତରଳିଗଲା । ସେ ଗଭୀର ଅନୁତାପରେ ମ୍ରିୟମାଣ ହୋଇ-ପଡ଼ିଲେ । ବୋଧହୁଏ ନ୍ୟାୟୋଚିତ ଉପାୟରେ ବିଜୟଲାଭ କରିଥିଲେ ତାଙ୍କୁ ସେପରି ବିଚଳିତ ହେବାକୁ ପଡ଼ି ନଥାନ୍ତା ! କଳିଙ୍ଗ-ଯୁଦ୍ଧ ତାଙ୍କ ଚରିତ୍ରକୁ ପରିମାର୍ଜିତ କରି ଏକ ଶାଶ୍ୱତ ଆଲୋକର ସନ୍ଧାନ ଦେଲା । ତେଣୁ ସେ ଚିରଦିନ ଲାଗି ହିଂସାବୃତ୍ତି ପରି-ତ୍ୟାଗ କରି ଅହିଂସା, ନ୍ୟାୟ ଓ ସତ୍ୟମାର୍ଗର ସନ୍ଧାନରେ ବ୍ରତୀ ହେବାକୁ ଶପଥ କଲେ ।

ସେ ସମୟରେ ବୌଦ୍ଧଶ୍ରମଣମାନେ ଖଣ୍ଡଗିରିରେ ଆଶ୍ରମ କରିଥିଲେ । ସମ୍ରାଟ ଅଶୋକ ନିଜର ଚିରପୋଷିତ ଦମ୍ଭ ଓ ରାଜସମ୍ମାନ ତ୍ୟାଗକରି ଜଣେ

ଦୀନଭିକ୍ଷୁ ବେଶରେ ସେହି ଧର୍ମପୀଠରେ ଉପସ୍ଥିତ ହେଲେ । ଦୁରପନେୟ ପାପକର୍ମରୁ ମୁକ୍ତିଲାଭ କରିବାଲାଗି ତାଙ୍କ ଅନୁତପ୍ତ ହୃଦୟ ଆକୁଳ ହୋଇ ଉଠିଲା । ଶ୍ରମଣମାନଙ୍କଠାରେ ଶରଣାପନ୍ନ ହୋଇ ଉପଦେଶ ଗ୍ରହଣ କରନ୍ତେ, ତାଙ୍କର ପରବର୍ତ୍ତୀ ଜୀବନ ଅହିଂସାମନ୍ତ୍ରରେ ଉଦ୍ଦୀପିତ ହୋଇ ଧର୍ମପଥରେ ପରିଚାଳିତ ହେଲା । ସେହିଦିନଠାରୁ ସେ 'ପ୍ରିୟଦର୍ଶୀ ଧର୍ମାଶୋକ' ନାମରେ ଦେଶ ବିଦେଶରେ ପରିଚିତ ହେଲେ । କେବଳ ମନୁଷ୍ୟ ନୁହିଁ, ପଶୁପକ୍ଷୀ-କୀଟ ପତଙ୍ଗମାନଙ୍କ ପ୍ରତି ଦୟା ପ୍ରଦର୍ଶନ କରିବାକୁ ଉପଦେଶ ଦେଇ ସେ ଯେଉଁ ଆଦେଶାବଳୀ ପ୍ରସ୍ତର ଗାତ୍ରରେ ଖୋଦିତ କରାଇଛନ୍ତି, ତାହା ଅଦ୍ୟାପି ଗନ୍ଧବତୀ ତଟବର୍ତ୍ତୀ ଧଉଳୀରେ ବିଦ୍ୟମାନ । ଜୀବପ୍ରତି ତାଙ୍କ ଦୟାଭାବର ସ୍ମରଣ ପାଇଁ 'ଦୟା' ନାମକ ଏକ ପୟଃପ୍ରଣାଳୀ ପରବର୍ତ୍ତୀକାଳରେ ସେଠାରେ ଖୋଦିତ ହେଲା । ଅଶୋକ ନିଜ ଶୋକାକୁଳ ହୃଦୟର ମର୍ମସ୍ପର୍ଶୀ ଅନୁତାପବାଣୀ ବ୍ୟକ୍ତକରି ଜଉଗଡ଼ (ଗଞ୍ଜାମ ଜିଲ୍ଲାରେ)ଠାରେ ଏକ ଅନୁଶାସନ ମଧ୍ୟ ଲିପିବଦ୍ଧ କଲେ ।

କଳିଙ୍ଗଯୁଦ୍ଧର ହୃଦୟବିଦାରକ ଦୃଶ୍ୟରେ ମୁଁ ଏତେଦୂର ମର୍ମାହତ ହେଲି ଯେ, ସେ ଘଟଣାପରେ ବହୁଦିନ ପର୍ଯ୍ୟନ୍ତ ମୋ ମନକୁ ଘୋର ଅବସାଦ ଗ୍ରାସକରି ରହିଲା । ସେହି ସମୟ ମଧ୍ୟରେ ମୋର ନିର୍ଯ୍ୟାତିତ ବକ୍ଷରେ କି ପରିବର୍ତ୍ତନ ଘଟିଯାଇଛି, ସେ କଥା ମୋର ଆଦୌ ସ୍ମରଣ ନାହିଁ ।



ମୋର ଜ୍ଞାନୋଦୟ ପରେ ମୁଁ ଯାହା ଦେଖିଲି, ସେଥିରୁ ବେଶ୍ ବୁଝି ପାରିଲି ଯେ, ସତ୍ୟ, ଧର୍ମ ଓ ନ୍ୟାୟ ସମ୍ମୁଖରେ ଜଗତର କୌଣସି ଶକ୍ତି ତିଷ୍ଠି ରହିପାରେ ନାହିଁ । ମହାପରାକ୍ରମଶାଳୀ ମୌର୍ଯ୍ୟସାମ୍ରାଜ୍ୟର ପତନ ହୋଇ ଯାଇଛି । ବିଜିତ କଳିଙ୍ଗ ପୁନର୍ବାର ଶକ୍ତିଶାଳୀ ହୋଇ ଉଠିଛି । ମନୁଷ୍ୟ ଜୀବନରେ ଘାତ-ପ୍ରତିଘାତ ପରି ଦେଶ ଓ ଜାତିର ଭାଗ୍ୟାକାଶରେ ମଧ୍ୟ ପରିବର୍ତ୍ତନ ଘଟିବା ସ୍ୱାଭାବିକ ।

ସେହି ପରିବର୍ତ୍ତନର ସ୍ପଷ୍ଟ ଲକ୍ଷଣସ୍ୱରୂପ ମୁଁ ଦେଖିଲି, କୁମାରୀପାହାଡ଼ (ଆଧୁନିକ ଖଣ୍ଡଗିରି)ର ଚତୁର୍ଦ୍ଦିଗ ଘେରି ଏକ ମହାବିହାର ସ୍ଥାପିତ ହୋଇଛି । ତହିଁରେ ଅସଂଖ୍ୟ ଶ୍ରମଣ, ଭିକ୍ଷୁ, ପଣ୍ଡିତ ଓ ଗୁଣୀ ଅବସ୍ଥାନ କରି ପବିତ୍ରଜୀବନ ଯାପନ କରୁଛନ୍ତି । ଦେଶର

ଦେଶରେ ଶାନ୍ତି ଓ ସୁଖର ଅବାରିତ ଧାରା ବହିବୁଲିଛି । କଳିଙ୍ଗର ବୀରମାନେ ଦୃଢ଼ ମୌରବର ପୁନରୁଦ୍ଧାର ନିମିତ୍ତ ସଂଗଠିତ ହୋଇ ରାଜ୍ୟକୁ ଶତ୍ରୁଶୂନ୍ୟ କରିଦେଇଛନ୍ତି । କରିଦେଇଛନ୍ତି । ଅମାତ୍ୟ ଓ ପଦସ୍ଥ କର୍ମଚାରୀବୃନ୍ଦ ନିଜ ନିଜ ବୁଦ୍ଧି ଓ ଚତୁର୍ଯ୍ୟହେତୁ ଦେଶରେ ସୁଶାସନର ମୂଳଭିତ୍ତି ସୁଦୃଢ଼ କରିବାରେ ତତ୍ପର ହୋଇଛନ୍ତି । ସଂକ୍ଷେପରେ କହିବାକୁଗଲେ, କଳିଙ୍ଗର ପ୍ରତ୍ୟେକ ନାଗରିକ ଦେଶଗଠନ କାର୍ଯ୍ୟରେ ଆତ୍ମୋତ୍ସର୍ଗ କରିବାକୁ ପ୍ରତିଜ୍ଞାବଦ୍ଧ ହୋଇ ହୃତ ଗୌରବର ପୁନଃସ୍ଥାପନ ନିମିତ୍ତ ସଚେତନ ହୋଇ ଉଠିଛନ୍ତି ।

ଉନ୍ନତିର ସେହି ମଧୁମୟ ଅବସରରେ ମୋ କ୍ରୋଡମଣ୍ଡନ କରି ଜଣେ ସ୍ୱନାମଧନ୍ୟ ବୀର ଜନ୍ମ ଗ୍ରହଣ କଲେ । 'ଚେଦୀ'ବଂଶର ଉଜ୍ଜ୍ୱଳରତ୍ନ ସ୍ୱରୂପ ସେହି ଅଦ୍ଭୁତ କର୍ମୀ ମହାବୀରଙ୍କ ନାମଥିଲା ମହାମେଘବାହନ ଐରରାଜ ଖାରବେଳ । ସେ ଅତି ଅଳ୍ପ ବୟସରୁ ବହୁ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ମୋ ସେହି ପ୍ରିୟ ଶ୍ରେଷ୍ଠ ପୁତ୍ରକୁ କୋଳରେ ଧାରଣ କରି ମୁଁ ଧନ୍ୟା ହେଲି ।

ମୋ କୋଳରେ ସେ ପ୍ରାୟ ତେରଟି ବର୍ଷ ରାଜତ୍ୱ କରିଥିଲେ । ସେହି ଅଳ୍ପକାଳ ମଧ୍ୟରେ ସେ ଯେଉଁ ମହତ୍ତ୍ୱ କାର୍ଯ୍ୟ ସମ୍ପାଦନ କରିଯାଇଛନ୍ତି, ତାହା ସ୍ମରଣ କଲେ ମୋର ବକ୍ଷ ଗର୍ବରେ ସ୍ଫୀତ ହୋଇଉଠେ ।

ପୂର୍ବେ ଏକ ଭୀଷଣ ବାତ୍ୟା ମୋ ଉପରେ ବହି ଯାଇଥିଲା । ତାହା ଫଳରେ ବହୁ ପ୍ରାସାଦ ଅଟ୍ଟାଳିକା ଆଦି ଭୂମିସାତ୍ ହୋଇ କଳିଙ୍ଗନଗର ପ୍ରାୟ ଶ୍ରୀହୀନ ହୋଇ ଯାଇଥିଲା । ମହାବୀର ଖାରବେଳ ସେଗୁଡ଼ିକର ପୁନଃ ନିର୍ମାଣକରି ନଗରର ଶୋଭା ବର୍ଦ୍ଧନ କରିଥିଲେ । ରାଜ୍ୟର ଅନେକ ଭଗ୍ନାବଶେଷ ଦୁର୍ଗର ନିର୍ମାଣ କରାଇଲେ; କାରଣ ଦୁର୍ଗ ଓ ପ୍ରାସାଦ ସୁଦୃଢ଼ ନହେଲେ ରାଜ୍ୟର ଶକ୍ତି ବୃଦ୍ଧି ପାଏ ନାହିଁ ବୋଲି ତାଙ୍କର ସୁସ୍ପଷ୍ଟ ଧାରଣା ଥିଲା । ପ୍ରଜାରଞ୍ଜନ କାର୍ଯ୍ୟରେ ଆଗଭର ହୋଇ ସେ ଅନେକ ଉଦ୍ୟାନ ବସାଇବା ସଙ୍ଗେ ସଙ୍ଗେ ବହୁ ପୁଷ୍କରିଣୀ ଖନନ କରାଇଥିଲେ ।

କଳିଙ୍ଗ ରାଜ୍ୟରେ ଦକ୍ଷିଣ ସୀମା ସେତେବେଳେ ଆନ୍ଧ୍ରରାଜ୍ୟକୁ ସ୍ପର୍ଶ କରୁଥିଲା । ଆନ୍ଧ୍ରରାଜ ସାତକର୍ଣ୍ଣୀ ଅତି ପରାକ୍ରମଶାଳୀ ହୋଇ ଥିବାରୁ ନିଜର ଔଦ୍ଧତ୍ୟ ପ୍ରକାଶ କରି ମୋର ଦକ୍ଷିଣାଂଶରୁ କେତେକ ଅଞ୍ଚଳ ନିଜ ରାଜ୍ୟରେ ବଳପୂର୍ବକ ମିଶାଇ ନେବାକୁ

ହାନଚେଷ୍ଟା କରୁଥିଲେ । ତାହା ଦ୍ୱାରା ମୁଁ ନିତାନ୍ତ ବିକଳାଙ୍ଗ ହୋଇ ପଡ଼ୁଥାନ୍ତି । କିନ୍ତୁ ମୋର ବୀରପୁତ୍ର ଖାରବେଳ ହୀନବୀର୍ଯ୍ୟ ରାଜାମାନଙ୍କ ପରି ନୀରବ ରହିପାରିଲେ ନାହିଁ । ସେ ଅବିଳମ୍ବେ ବହୁ ସୈନ୍ୟ ସାମନ୍ତଙ୍କ ଦ୍ୱାରା ଆନ୍ଧ୍ର ରାଜ୍ୟ ଆକ୍ରମଣକଲେ । କଳିଙ୍ଗର ପରାକ୍ରମ ସେହି ଯୁଦ୍ଧରେ ବେଶ୍ ପ୍ରମାଣିତ ହେଲା । ଆନ୍ଧ୍ର ରାଜା ମହାପରାକ୍ରମଶାଳୀ ସାତକର୍ଣ୍ଣୀ ପୂର୍ଣ୍ଣପରାଜୟ ସ୍ୱୀକାର କରି ଖାରବେଳଙ୍କ ପାଦତଳେ ତାଙ୍କର ଗର୍ବୋନ୍ନତ ଶିର ଅବନତ କଲେ । ତା'ପରେ ମୋର ବୀରସନ୍ତାନଗଣ ବିଜୟ ଉଲ୍ଲାସରେ ଉତ୍ଫୁଲ୍ଲ ହୋଇ କୃଷ୍ଣବେଣୀ ତଟରେ ଉପସ୍ଥିତ ହେଲେ ଓ ତତ୍‌ସନ୍ନିକଟବର୍ତ୍ତୀ ମୂଷିକ ନଗରକୁ ଧ୍ୱଂସ କଲେ ।

ତା ପରେ ମୋର ପଶ୍ଚିମାଞ୍ଚଳ ନିରାପଦ କରିବା ନିମିତ୍ତ କୃଷ୍ଣାତଟରୁ ଖାରବେଳ ଫେରିଆସି ଘୋର ବନ ପ୍ରାନ୍ତର ଓ ଶୈଳ ଶିଖର ଅତିକ୍ରମ ପୂର୍ବକ 'ରାଷ୍ଟ୍ରିକ' ଓ 'ଭୋଜକ' ମାନଙ୍କୁ ସେଠାରୁ ବିତାଡ଼ିତ କଲେ; କାରଣ ସେମାନଙ୍କ ଦୌରାତ୍ମ୍ୟରେ ମୋର ପଶ୍ଚିମାଂଶ ସର୍ବଦା ପ୍ରକମ୍ପିତ ହେଉଥିଲା ।

ଖାରବେଳଙ୍କର ସେହି ବିଜୟ ସମ୍ବାଦ ଭାରତରେ ସର୍ବତ୍ର ଘୋର ଆତଙ୍କ ସୃଷ୍ଟି କଲା । ମଗଧ ଏବଂ ଉତ୍ତରାପଥର ରାଜାମାନେ ଆତ୍ମରକ୍ଷା ପାଇଁ ପ୍ରସ୍ତୁତ ହୋଇ ରହିଲେ । କିନ୍ତୁ ଏ ସମ୍ବାଦ ଦୂତମୁଖରୁ ଶ୍ରବଣ କରିମାତ୍ରେ ଖାରବେଳ ନିଜର ସୈନ୍ୟବାହିନୀ ଉତ୍ତରାଞ୍ଚଳ ଅଭିମୁଖରେ ଅଭିଯାନ କରିବାକୁ ଆଦେଶ ଦେଲେ । ଚତୁରଙ୍ଗ-ବାହିନୀରେ ସଜ୍ଜିତ ହୋଇ ସେ ଯେତେବେଳେ କଳିଙ୍ଗ ନଗରୀର ତୋରଣ ପଥରେ ଗମନ କଲେ, ନଗରର କୁଳଲଳନାମାନେ ଦ୍ୱାର ଦେଶରେ ପୂର୍ଣ୍ଣକୁମ୍ଭ ଓ ହୁଳହୁଳି ଧ୍ୱନିରେ ତାଙ୍କର ବିଜୟ କାମନା କଲେ । କି ଉତ୍ସାହ ପୂର୍ଣ୍ଣ ସେ ଦୃଶ୍ୟଟି

କଳିଙ୍ଗ ସୈନ୍ୟଙ୍କର ଦର୍ପରେ ପ୍ରଥମେ ମଗଧପ୍ରତି "ଦଣ୍ଡଯାତ୍ରା' କଲେ । 'ଗୋରଥ ଗିରି' ପାଦ ଦେଶରେ ଶିବିର ସ୍ଥାପିତ ହେଲା । କଳିଙ୍ଗର ସୁଶିକ୍ଷିତ ଅଫକ୍ଷ୍ୟ ବୀରମାନଙ୍କ ସମ୍ମୁଖରେ ନିଜର ଅସ୍ତିତ୍ୱ ବଜାୟ ରଖିବା ଅସମ୍ଭବ ବୋଲି ଜାଣି, ମଗଧ ସୈନ୍ୟ ପୃଷ୍ଠଭଙ୍ଗ ଦେଲେ । ମଗଧରାଜା ବୃହସ୍ପତି ମିତ୍ର ହସ୍ତୀପୃଷ୍ଠରୁ ଅବତରଣ କରି ଖାରବେଳଙ୍କର ଚରଣ ବନ୍ଦନା କଲେ । କେବଳ ସେତିକି ନୁହେଁ, ମଗଧର ସମସ୍ତ ରାଜ ସମ୍ପଦ ସହ ସେ ଖାରବେଳଙ୍କ ଆନୁଗତ୍ୟ ସ୍ୱୀକାର କଲେ । ତାହା ପରେ କଳିଙ୍ଗ ବୀରଗଣ ଆହୁରି ଅଗ୍ରସର ହୋଇ ମଥୁରା ଏବଂ ଉତ୍ତରାପଥରେ ଦୁର୍ଦ୍ଧର୍ଷ 'ମୋଷିକ'ମାନଙ୍କୁ ପରାସ୍ତକରି ଯେଉଁଦିନ ବିପୁଳ ଧନରତ୍ନ ବହନ କରି ମୋ କୋଳକୁ ଫେରି ଆସିଲେ, ସେ ଦିନର ଆନନ୍ଦ ଉତ୍ସବ ବର୍ଣ୍ଣନା କରିବା ମୋ ପକ୍ଷେ ସମ୍ଭବ ନୁହେଁ । ସେହି

ଅଭୂତପୂର୍ବ ବିଜୟର ସ୍ମାରକ ସ୍ୱରୂପ ମୋ ବକ୍ଷରେ ଏକ ଉଚ୍ଚ 'ମହାବିଜୟ ପ୍ରସାଦ' ନିର୍ମିତ ହେଲା । ସେହି ପ୍ରାସାଦର ଶିଖର ଦେଶରେ ଯେଉଁ ବିଜୟ ବୈଜୟନ୍ତୀ ଉଡୁଥିଲା, ତାହା ମୋ ଗୌରବର ଜୀବନ୍ତ ପ୍ରତୀକ ।

ଏହାପରେ, ପ୍ରାୟ ତିନିଶହ ବର୍ଷପୂର୍ବରୁ 'ନନ୍ଦ' ନାମକ ଜନୈକ ରାଜାଙ୍କ ଦ୍ୱାରା ଅପହୃତ କଳିଙ୍ଗର ପବିତ୍ର 'ଜିନାସନ'କୁ ମୋର ସ୍ନେହର ପୁତ୍ର ଖାରବେଳ ଗୌରବର ସହିତ ଫେରାଇଆଣି ପୁନଃ ପ୍ରତିଷ୍ଠା କରାଇ ଥିଲେ । ସେହି ନନ୍ଦରାଜାଙ୍କ ଦ୍ୱାରା ପୂର୍ବଖୋଳିତ ପୟଃପ୍ରଣାଳୀଟିକୁ ସପ୍ରାପ୍ରାଣିତ କରି, ସେ ସମଗ୍ର କଳିଙ୍ଗଦେଶକୁ 'ଅଦେବ ମାତୃକା' ଦେଶରେ ପରିଣତ କଲେ । କୃଷ୍ଣବେଣୀ ତଟରୁ ସୁଦୂର 'ଶୋଣ' ନଦୀ ପର୍ଯ୍ୟନ୍ତ ଯେଉଁଦିନ କଳିଙ୍ଗର ଜୟଘୋଷ ଶ୍ରୁତିଗୋଚର ହେଲା । ତାହା ମୋ ଜୀବନର ଏକ ମହାଆନନ୍ଦ ଦିବସ । କିନ୍ତୁ ଭାଗ୍ୟର ଉତ୍ଥାନ ପତନର ମାର୍ଗଦେଇ ପ୍ରତ୍ୟେକକୁ ଅଗ୍ରସର ହେବାକୁ ପଡ଼େ । ନିୟତିର ସେହି ନିଷ୍ଠୁରତମରୁ କେହି ଉଦ୍ଧାର ପାଇ ପାରିନାହିଁ ମୁଁ ମଧ୍ୟ ସେହି ଚକ୍ର ଘୂର୍ଣ୍ଣନରେ ପଡ଼ି ଦିନେ ସର୍ବସ୍ୱ ହରାଇଥିଲି । ଏତିକି ମୋର ଭାଗ୍ୟାକାଶରୁ ଦୀପ୍ତିମନ୍ତ ସୂର୍ଯ୍ୟ ଅସ୍ତମିତ ହୋଇ ପୁଣି ରାତ୍ରିର କରାଳ ଅନ୍ଧକାର ମୋତେ ଗ୍ରାସ କରିବାକୁ ମାଡ଼ି ଆସିଲା ।

୮

ଏବେ ପ୍ରଭାତ କାଳରେ ମୁଁ ଦେଖିଲି' ନୀଳଜଳଧି 'କଲ୍ଲୋଳ ଭେଦକରି ବହୁ ନୌକା ମୋ ଉପକୂଳର ବିଭିନ୍ନ ସ୍ଥାନରେ ଆସି ପହଞ୍ଚିଛନ୍ତି । ତନ୍ମଧ୍ୟରୁ ବହୁ ବୈଦେଶିକ ଅବତରଣ କରି ମୋ ବକ୍ଷରେ ଏଣେ ତେଣେ କିଛି ଅନୁସନ୍ଧାନ କରିବାରେ ଲାଗିଲେ । ସେମାନଙ୍କ ଦେହର ବର୍ଣ୍ଣ ଗୌର, ନାସିକା ଦୀର୍ଘ, ଚକ୍ଷୁ ନୀଳବର୍ଣ୍ଣ, କେଶ ଅରୁଣାଭ, ବାହୁ ବଳିଷ୍ଠ ଓ ପେଶୀଯୁକ୍ତ ଏବଂ ସେମାନେ ଅଦ୍ଭୁତ ପୋଷାକରେ ଭୂଷିତ ହୋଇଥିଲେ । ଅନୁମାନରୁ ଜାଣିଲି, ସେମାନେ ବୋଧହୁଏ ଶାକଦ୍ୱୀପର ଅଧିବାସୀ । ଏ ଦେଶରେ ବାଣିଜ୍ୟ ଓ ଆଧିପତ୍ୟ ବିସ୍ତାର କରିବା ଉଦ୍ଦେଶ୍ୟରେ ସେମାନେ ଆସିଥିଲେ ।

ଉକ୍ତ ଶାକଦ୍ୱୀପବାସୀଙ୍କର ଗୋଟିଏ ଶାଖା ଏଥିପୂର୍ବରୁ ମଥୁରା ଓ ତକ୍ଷଶୀଳାରେ ଅବସ୍ଥାନ କରୁଥିଲେ । ବୈଦେଶିକ ଆଗ୍ରର ବ୍ୟବହାର ସହ କେତେକ ବୈଜ୍ଞାନିକ ତଥ୍ୟ

ବହନକରି ସେମାନେ ଏ ଦେଶରେ ପ୍ରବିଷ୍ଟ ହୋଇଥିଲେ । ଧୀରେ ଧୀରେ କଳିଙ୍ଗ-ବାସୀମାନେ ସେମାନଙ୍କ ପ୍ରଭାବରେ ପ୍ରଭାବିତ ହେଲେ । ସେମାନେ ଅନନ୍ତଆକାଶର ଅସଂଖ୍ୟ ଗ୍ରହନକ୍ଷତ୍ର ସହିତ ପରିଚିତ ଥିଲେ । ସେମାନଙ୍କ ଗତିବିଧି ଲକ୍ଷକରି ଦିଗନ୍ତ-ବ୍ୟାପୀ ସାଗର ଗର୍ଭରେ ସେମାନେ (ବୈଦେଶିକମାନେ) ନୌକାଚାଳନ କରି ନିର୍ଦ୍ଦିଷ୍ଟ ସ୍ଥାନରେ ପ୍ରବିଷ୍ଟ ହୋଇ ପାରୁଥିଲେ । ସେମାନଙ୍କର ଏ ପ୍ରକାର ବିଦ୍ୟା କ୍ରମେ ଜ୍ୟୋତିଷ ଶାସ୍ତ୍ର ନାମରେ ଭାରତରେ ପରିଚିତ ହେଲା । ତତ୍ତ୍ୱବ୍ୟତୀତ ଶରୀରତତ୍ତ୍ୱ ଓ ଚିକିତ୍ସା-ବିଦ୍ୟାରେ ସେମାନେ ପାରଦର୍ଶିତା ଲାଭ କରିଥିଲେ । ରାସାୟନିକ ଦ୍ରବ୍ୟର ପ୍ରସ୍ତୁତ ପ୍ରଣାଳୀ ମଧ୍ୟ ସେମାନେ ସୁନ୍ଦର ରୂପେ ଜାଣିଥିଲେ । ତେଣୁ ସେମାନଙ୍କର ସାହା-ଚର୍ଯ୍ୟରେ ମୋର ସନ୍ତାନଗଣ ଏକ ନୂତନ ଆଲୋକର ସନ୍ଧାନ ପାଇଥିଲେ । ଧୀରେ ଧୀରେ ସେମାନଙ୍କ ଦ୍ୱାରା ପ୍ରଚଳିତ ତାମ୍ରମୁଦ୍ରା ଏ ଦେଶରେ ସର୍ବତ୍ର ପ୍ରବର୍ତ୍ତିତ ହେଲା । ତତ୍ପୂର୍ବରୁ ଏଠାରେ କେବଳ କପର୍ଦ୍ଦକ ଓ କେତେକ ସାଙ୍କେତିକ ଚିହ୍ନ ସମ୍ବଳିତ ମୁଦ୍ରାର ପ୍ରଚଳନ ଥିଲା; ତେଣୁ ବ୍ୟବସାୟ ଓ ବାଣିଜ୍ୟ କ୍ଷେତ୍ରରେ ଅନେକ ଅସୁବିଧା ଜାତ ହେଉଥିଲା ।

ସେହି ଶାକଦ୍ୱୀପବାସୀ ପ୍ରଧାନତଃ ନାଗ ଓ ସୂର୍ଯ୍ୟଙ୍କର ଉପାସକ ଥିଲେ । ତେଣୁ ସେମାନେ ମୋ କୋଳରେ କିଛୁକାଳ ଅବସ୍ଥାନ କଲା ପରେ କେତେକ ମନ୍ଦିର କରି ସେମାନଙ୍କ ଆରାଧ୍ୟ ଦେବତାଙ୍କର ବିଗ୍ରହ ସ୍ଥାପନ କଲେ । କାଳକ୍ରମେ ସ୍ଥାନୀୟ ଅଧିବାସୀମାନେ ମଧ୍ୟ ସେମାନଙ୍କୁ ଅନୁସରଣ କରି ନାଗ ଓ ସୂର୍ଯ୍ୟଙ୍କୁ ଉପାସନା କରିବାକୁ ଲାଗିଲେ । ସେହି ବୈଦେଶିକ ସମ୍ପ୍ରଦାୟ ବହୁକାଳ ମୋ କୋଳରେ ବାସକଲା କ୍ରମେ ଏ ଦେଶ ବାସୀଙ୍କ ସହିତ ସମ୍ମିଳିତ ହୋଇ ନିଜର ମୌଳିକ ସତ୍ତା ହରାଇ ବସିଲେ । କେବଳ ସେମାନେ କାହିଁକି, ଅନେକ ବୈଦେଶିକ ସମ୍ପ୍ରଦାୟ ସେମାନଙ୍କ ଜାତୀୟତା ହରାଇ କ୍ରମେ ଏ ଦେଶରେ ଅଧିବାସୀଙ୍କ ଆଚାର ବ୍ୟବହାର ତଥା ସଭ୍ୟତାରେ ନିଜସ୍ୱ ହରାଇ ଥିଲେ । ସେମାନଙ୍କ ବଂଶଧରମାନେ ଅଦ୍ୟାପି ମୋ କୋଳରେ ବାସକରି ଏ ଦେଶର ରୀତି ନୀତି, ଆଚାର ବ୍ୟବହାର ସହିତ ଏତେ ଦୂର ଜଡ଼ିତହୋଇ ଯାଇଛନ୍ତି ଯେ, ସେମାନଙ୍କୁ ଯଦି କେହି ଦେଢ଼ହଜାର ବର୍ଷ ପୂର୍ବର ଏକ ବୈଦେଶିକ ବିଧର୍ମୀ ଜାତି ବୋଲି କହିବେ, ତା' ହେଲେ ସେମାନେ ଘୋର ପ୍ରତିବାଦ କରିବେ କିମ୍ବା ନିଜକୁ ଅପମାନିତ ବୋଧ କରିବେ । ବର୍ତ୍ତମାନ ଯେଉଁମାନେ ଆମଦେଶରେ 'ଗ୍ରହବିପ୍ର' ନାମରେ ପରିଚିତ, ସେମାନେ ବିଦେଶାଗତ ଶାକଦ୍ୱୀପବାସୀ ସୂର୍ଯ୍ୟ ଉପାସକ ସମ୍ପ୍ରଦାୟର ବଂଶଧର । ସେମାନେ ହିଁ ସୂର୍ଯ୍ୟଙ୍କୁ 'ଗ୍ରହରାଜ' ଆଖ୍ୟାଦେଇ ପୂଜାକରୁଥିଲେ । ଜ୍ୟୋତିଃଶାସ୍ତ୍ର ଆଲୋଚନା ସେମାନଙ୍କର ମୁଖ୍ୟ ବ୍ୟବସାୟ ଥିଲା । ତେଣୁ ଏ ଦେଶବାସୀ ସେମାନଙ୍କୁ ବ୍ରାହ୍ମଣ ଆଖ୍ୟାଦେଇ 'ଗ୍ରହବିପ୍ର' ନାମରେ ଅବହିତ

କରାଉଥିଲେ ଏବଂ ଯେଉଁମାନେ ଚିକିତ୍ସାଶାସ୍ତ୍ରରେ ପାଣ୍ଡିତ୍ୟଲାଭ କରିଥିଲେ, ସେମାନେ ଏ ଦେଶରେ 'ବୈଦ୍ୟ' ନାମରେ ପରିଚିତ ହୋଇ ଥିଲେ । ସମାଜରେ ସେମାନଙ୍କ ସମ୍ମାନ କୌଣସି ଗୁଣରେ ନ୍ୟୁନ ନଥିଲା ।

ଏଠାରେ ପ୍ରସଙ୍ଗକ୍ରମେ ଗୋଟିଏ କଥା କହି ରଖିବା ଆବଶ୍ୟକ—ଶାକଦ୍ୱୀପବାସୀ ଏ ଦେଶରେ ପଦାର୍ପଣ କରିବା ପୂର୍ବରୁ ମୋ ଅଙ୍ଗ ତିନି ଭାଗରେ ବିଭକ୍ତ ହୋଇ ଭିନ୍ନଭିନ୍ନ ନାମରେ ପରିଚିତ ହେଉଥିଲା । ପୂର୍ବୋତ୍ତର ଖଣ୍ଡ 'ତୋଷଳୀ' ନାମରେ ପରିଚିତ ଥିଲା; ପଶ୍ଚିମାଂଶ ଦକ୍ଷିଣକୋଶଳର ଅନ୍ତର୍ଭୁକ୍ତ ହୋଇଥିଲା: ତଥା ଦକ୍ଷିଣାଂଶ ମାତ୍ର କଳିଙ୍ଗନାମରେ ଖ୍ୟାତଥିଲା । ମୋର ପୂର୍ବୋତ୍ତର ଭାଗରେ ଯେତେବେଳେ ବୈଦେଶିକ ଜାତିସମୂହ ଆଧିପତ୍ୟ ବିସ୍ତାର କରିଥିଲେ, ସେତେବେଳେ ମୋର ପଶ୍ଚିମାଂଶଟି 'ମୌଦଗଲ' ବା 'ତ୍ରୈମେଶ୍ୱର ପାଦଭକ୍ତ' ଓ ନଳବଂଶୀୟ ରାଜାମାନଙ୍କର ଶାସନାଧୀନ ଥିଲା । କିନ୍ତୁ ମୋର ଦକ୍ଷିଣାଂଶଟି ଛୋଟଛୋଟିଏ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇ ବହୁ ସ୍ୱାଧୀନରାଜାଙ୍କ ଦ୍ୱାରା ଶାସିତ ହେଉଥିଲା ।

ଓଃ ! କି ଦାରୁଣ, ଦୁଃଖଦାୟକ ସେ ଯୁଗ ! ସେତେବେଳେ ମୁଁ ନିଜକୁ ହରାଇ ଖଣ୍ଡ-ବିଖଣ୍ଡ ଅବସ୍ଥାରେ ପଡ଼ିରହିଥିଲି । ମୋର ନାମ ପର୍ଯ୍ୟନ୍ତ କୌଣସିଠାରେ ଶୁଣାଯାଉ ନଥିଲା । ମୋର ସନ୍ତାନଗଣ ଅଜ୍ଞାନତା ବଶତଃ ପରସ୍ପର ସହିତ ଅପରିଚିତ ଥିଲେ । ଭାଇ ସହିତ ଭାଇର ମିଳନ ଏକ ଦୁରୂହ ବ୍ୟାପାର ବୋଲି ମନେ ହେଉଥିଲା । ଏହି ଘୋର ବିପର୍ଯ୍ୟୟ ମଧ୍ୟରେ ହଠାତ୍ ଦିନେ ମୋର ଭାଗ୍ୟୋଦୟ ଘଟିଲା । ସେହି ପୁନରୁତ୍‌ଥାନର କାହାଣୀ ଶୁଣିଲେ ଯେ କୌଣସି ବ୍ୟକ୍ତି ଆଶ୍ଚର୍ଯ୍ୟାଭିଭୂତ ହେବ, ସନ୍ଦେହ ନାହିଁ !

## ୯

ଦିନେ ଉଜ୍ଜ୍ୱଳ ପ୍ରଭାତରେ ଦେଖାଗଲା, ମୋର ପଶ୍ଚାଦ୍‌ଭାଗରେ ଅବସ୍ଥିତ 'ମହାକାନ୍ତାର' ମଧ୍ୟରୁ ପଙ୍ଗପାଳ ପରି ବହୁସଂଖ୍ୟକ ଅଶ୍ୱାରୋହୀ ସୈନ୍ୟ ମାଡ଼ି ଆସୁଛନ୍ତି । ନଦୀ, ପର୍ବତ, ଅରଣ୍ୟ କେହି ସେମାନଙ୍କର ଗତିରୋଧ କରିବାକୁ ସମର୍ଥ ହୋଇନଥିଲେ । ସେମାନେ ଦକ୍ଷିଣ କୋଶଳ ଲଙ୍ଘନ କରି 'ମହାକାନ୍ତାର'ରେ ଆସି ଉପସ୍ଥିତ ହେଲେ । ତା'ପରେ ସେମାନେ ସେଠାକାର ବ୍ୟାଘ୍ରରାଜାଙ୍କୁ ପରାସ୍ତକରି ଦୁର୍ଭେଦ୍ୟ ଅରଣ୍ୟାନୀ

ମଧ୍ୟରେ ପ୍ରବେଶ କଲେ । କଳିଙ୍ଗ ସେତେବେଳେ ଖଣ୍ଡବିଖଣ୍ଡିତ ହୋଇ କେତୋଟି କ୍ଷୁଦ୍ର କ୍ଷୁଦ୍ର ସ୍ୱାଧୀନରାଜ୍ୟରେ ପରିଣତ ହୋଇଥିଲା ଓ ପରସ୍ପର ମଧ୍ୟରେ ଏକତା ଅଭାବରୁ ପ୍ରତ୍ୟେକ ସ୍ୱାଧୀନ ରାଜ୍ୟ ଅତିଦୁର୍ବଳ ଥିଲା ।

ପ୍ରବଳପରାକ୍ରମଶାଳୀ ଗୁପ୍ତବଂଶୀୟ ମହାରାଜ ସମୁଦ୍ରଗୁପ୍ତଙ୍କ ନେତୃତ୍ୱରେ ନବାଗତ ପୂର୍ବଭାରତୀୟ ସୈନ୍ୟମାନେ 'ମହାକାନ୍ତାର' ଅତିକ୍ରମ କରି କୁରାଳ, ପିଷ୍ଟପୁର, ଦେବରାଷ୍ଟ୍ର, ଏରଣ୍ଡପଲ୍ଲୀ, କୋଥୂର ପ୍ରଭୃତି କ୍ଷୁଦ୍ରରାଜ୍ୟଗୁଡ଼ିକ ଅନାୟାସରେ ଜୟ କରିଗଲେ । ତା'-ପରେ ଉନ୍ନତ 'ମହେନ୍ଦ୍ର ଶିଖର'ରେ ଦମ୍ଭ ଆରୋହଣ କରି ସେଠାରେ ଏକ ଜୟସ୍ତମ୍ଭ ନିର୍ମାଣକଲେ । ସେହି ବିଜୟସ୍ତମ୍ଭରେ ଗୁପ୍ତବଂଶୀୟ ପତାକା ମହାସମାରୋହରେ ଉଡ଼ାଇଥିଲେ । ଅତି ପ୍ରାଚୀନ କାଳରୁ ପାର୍ବତୀୟ ଅଧିବାସୀ ଶବର ଓ ପୁଳିନ୍ଦମାନଙ୍କ ଦ୍ୱାରା ପୂଜିତ ସ୍ତମ୍ଭସ୍ୱରୂପ ଗୋଟିଏ ବିଗ୍ରହ ସେଠାରେ ପ୍ରତିଷ୍ଠିତ ଥିଲା । ଗୁପ୍ତବଂଶୀୟ ବିଜୟବୀର ଓ ତାଙ୍କର ଅନୁଚରବର୍ଗ ସେହି ବିଗ୍ରହ ନିକଟରେ ପ୍ରଣତ ହୋଇ ସ୍ତୁତିଗାନ କଲେ । ସମ୍ରାଟ୍ ସମୁଦ୍ରଗୁପ୍ତଙ୍କ ସହିତ ଯେଉଁ କବି ଓ ପଣ୍ଡିତମାନେ ଆସିଥିଲେ, ସେମାନେ ମଧ୍ୟ ଅଭିନବ ସଂସ୍କୃତ ଶ୍ଳୋକ ରଚନା କରି ସେହି ବିଗ୍ରହର ସ୍ତୁତିଗାନ କରିଥିଲେ । ସେହିଦିନଠାରୁ ଉକ୍ତସ୍ଥାନଟି ଏକ ପ୍ରଖ୍ୟାତ ପୁଣ୍ୟକ୍ଷେତ୍ରରୂପେ ପରିଚିତ ହୋଇଆସୁଅଛି ।

ପରବର୍ତ୍ତୀଯୁଗରେ ସେହି କାଷ୍ଠସ୍ତମ୍ଭ ଏକ ଶିବଲିଙ୍ଗରୂପେ ପୂଜିତ ହୋଇ 'ଗୋକର୍ଣ୍ଣେଶ୍ୱର' ନାମରେ ଲୋକମୁଖରେ ବିଖ୍ୟାତ ହେଲା । ପରବର୍ତ୍ତୀ ଗଙ୍ଗବଂଶୀୟ ନରପତିମାନେ ତାଙ୍କୁ କୁଳଦେବତାରୂପେ ପୂଜାକରିଥିଲେ ।

ମହାରାଜା ସମୁଦ୍ରଗୁପ୍ତ ଅନାୟାସରେ ବନ୍ଦୀକରିଥିବା ଛୋଟ ଛୋଟ ରାଜାମାନଙ୍କୁ ଯେତେବେଳେ ମହେନ୍ଦ୍ର ପର୍ବତର ଶିଖର ଦେଶରେ ମୁକ୍ତ କରିଦେଲେ, ସେତେବେଳେ ସେଠାକାର ଅଧିବାସୀ, ଲକ୍ଷଲକ୍ଷ ପ୍ରଜା ପର୍ବତର ପାଦଦେଶରେ ସମବେତ ହୋଇ ଆନନ୍ଦଧ୍ୱନିରେ ଆକାଶ ପୃଥିବୀ ମୁଖରିତ କରିଦେଲେ । ସନ୍ଧ୍ୟାରାଗରେ ସୁରମ୍ୟ 'ବାରୁଣି' ବନ୍ଦର ନୀଳ ଜଳଧିର ତରଙ୍ଗଲାସ୍ୟ ମଧ୍ୟରେ ସ୍ମିତମୁଖ ଉନ୍ମୋଚନ କରି, ସେ ଆନନ୍ଦ ଧ୍ୱନିକୁ ସାଦରେ ଗ୍ରହଣକଲା । ବିନା ରକ୍ତପାତରେ ଯୁଦ୍ଧର ଅବସାନ ଘଟିଥିବାରୁ ସମସ୍ତେ ବେଶି ପ୍ରଫୁଲ୍ଲିତ ହୋଇଥିଲେ । ବିଜୟୀ ବୀରଙ୍କର ଆଗମନ ଓ ପ୍ରତ୍ୟାଗମନରେ ରାଷ୍ଟ୍ରର ଶାନ୍ତି ଶୃଙ୍ଖଳା ବ୍ୟାହତ ହୋଇ ନଥିଲେ ମଧ୍ୟ ତାହା ଦେଶବାସୀଙ୍କ ମନରେ ଏକ ଚମକ ସୃଷ୍ଟି କରିଥିଲା । ସେମାନେ ବୁଝିପାରିଥିଲେ ଯେ, ବିନାଯୁଦ୍ଧରେ ମଧ୍ୟ ଯେ କୌଣସି ବୈଦେଶିକ ଶକ୍ତି ଏ ଦେଶ ଜୟ କରିବାକୁ ସମର୍ଥ ହେବ ; କାରଣ

ପରସ୍ପର ମଧ୍ୟରେ ଏକତାର ଅଭାବରୁ ରାଷ୍ଟ୍ର ଅତ୍ୟନ୍ତ ଦୁର୍ବଳ ହୋଇ ଯାଇଥିଲା । ଶକ୍ତିଶାଳୀ କେନ୍ଦ୍ରଶକ୍ତିର ସର୍ବଲୋପ ପାଇ କ୍ଷୁଦ୍ର କ୍ଷୁଦ୍ର ଅଂଶରେ ବିଭକ୍ତ ହୋଇଥିବାରୁ ଦେଶର ମେରୁଦଣ୍ଡ ଭାଙ୍ଗି ଯାଇଥିଲା । ତେଣୁ ପ୍ରତିକାର ଚିନ୍ତା କରିବାରେ ସମସ୍ତେ ଲାଗି ପଡ଼ିଲେ ।

ଏ ଘଟଣାର କିଛିକାଳ ପରେ ଦେଶବାସୀଙ୍କ ନିରାଶରୂପକ ଅନ୍ଧକାର ରାଜି ଭେଦକରି ନବୋଦିତ ସୂର୍ଯ୍ୟ ସଦୃଶ ମାଠର ବଂଶୀୟ ଜଣେ ବିଚକ୍ଷଣ ବୀର ଆବିର୍ଭୂତ ହେଲେ । ତାଙ୍କ ନାମ ମହାରାଜ 'ଉମବର୍ମା' । ସେ ସିଂହପୁର ନାମକ ଏକ ନଗର ନିର୍ମାଣ କରି କଳିଙ୍ଗ ରାଷ୍ଟ୍ର ଶାସନ କରିବାକୁ ଲାଗିଲେ । ତାଙ୍କ ଅଲୌକିକ ବୀରତ୍ୱ ସମ୍ମୁଖରେ ଏ ଦେଶର କ୍ଷୁଦ୍ର କ୍ଷୁଦ୍ର ରାଜାମାନେ ମସ୍ତକ ଅବନତ କରିବାକୁ ବାଧ୍ୟ ହୋଇ ସାମନ୍ତ ରାଜା ରୂପେ ଅଧିକାର ଲାଭକଲେ । ତେଣୁ ଉମବର୍ମା ନିଜକୁ 'କଳିଙ୍ଗାଧିପତି' ଉପାଧିରେ ଭୂଷିତ କଲେ । ସେହିଦିନଠାରୁ ତାଙ୍କ ବଂଶର ପରବର୍ତ୍ତୀ ରାଜାମାନେ ସେହି ଉପାଧି ବ୍ୟବହାର କଲେ । ମାଠରବଂଶୀୟ ସୁଯୋଗ୍ୟ ରାଜାମାନଙ୍କ ଶାସନ ଦକ୍ଷତା ଓ ପରାକ୍ରମ ଫଳରେ ମୋର କୀର୍ତ୍ତିଗାଥା କେବଳ ଭାରତରେ ନୁହେଁ, ସିଂହଳ ତଥା ପୂର୍ବ ଦ୍ୱୀପପୁଞ୍ଜରେ ଯାଇବରେ ଗାନହେଲା ।

ସେହି ସମୟରେ କେତେ ଗୁଡ଼ିଏ ବୌଦ୍ଧ 'ବିହାର' କଳିଙ୍ଗ ଦେଶରେ ସ୍ଥାପିତ ହୋଇଥିଲା । ତନ୍ମଧ୍ୟରେ ପବିତ୍ର ବଂଶଧାରା ନଦୀତଟର 'ମହାବିହାର' ଅନ୍ୟତମ । ସେହି ମହାବିହାରର ଅନତି ଦୂରରେ 'ଦନ୍ତପୁର' ନାମରେ ଏକ ମହାନଗରୀ ବିଦ୍ୟମାନ ଥିଲା । ସେଠାରେ କଳିଙ୍ଗର ଜଣେ ରାଜପୁତ୍ର ମହାତ୍ମା ବୁଦ୍ଧଙ୍କର ଗୋଟିଏ 'ଦନ୍ତ' ସ୍ଥାପନ କରି ଆରାଧନା କରୁଥିଲେ । କାଳକ୍ରମେ ଗୁହଶିବ ନାମକ ଅନ୍ୟଏକ ରାଜା ମହାସମାରୋହରେ ସେହି ପବିତ୍ର ଦନ୍ତର ଉପାସନା କରିବାକୁ ଲାଗିଲେ । ସେତେବେଳେ ବହୁ ଦେଶର ରାଜା ତଥା ବୀରମାନେ କଳିଙ୍ଗରୁ ସେହି ମହାର୍ଘ ଦନ୍ତଟିକୁ ଅପହରଣ କରିବା ଉଦ୍ଦେଶ୍ୟରେ ଦଣ୍ଡଯାତ୍ରା କରୁଥିଲେ; କାରଣ ମହାତ୍ମା ବୁଦ୍ଧଙ୍କର ସେହି ପବିତ୍ର ଦନ୍ତର ଉପାସନା ଫଳରେ କଳିଙ୍ଗ ରାଜ ଅଶେଷ ବିଭବ ତଥା ଶକ୍ତିର ଅଧିକାରୀ ଥିଲେ ବୋଲି ଚତୁର୍ଦ୍ଦିଗରେ ରାଷ୍ଟ୍ର ହୋଇଗଲା ।

ସବୁବେଳେ ଶତ୍ରୁମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ମହାରାଜା ଗୁହଶିବ ସେହି ପବିତ୍ର ତଥା ମହାର୍ଘ ଦନ୍ତଟିକୁ ସ୍ୱ କନ୍ୟା ହେମମାଳାଙ୍କ ହସ୍ତରେ ଅର୍ପଣ କଲେ । ହେମମାଳା ସିଂହଳର ରାଜକୁମାର ଦନ୍ତ କୁମାରଙ୍କୁ ବିବାହ କରିଥିଲେ । ତେଣୁ ସେ

ପବିତ୍ର ଦନ୍ତର ସୁରକ୍ଷା ନିମିତ୍ତ ନିଜ ସ୍ୱାମୀଙ୍କ ସହ କଳିଙ୍ଗରୁ ଶୀଘ୍ର ଲଙ୍କାଦ୍ୱୀପକୁ ପ୍ରତ୍ୟାବର୍ତ୍ତନ କଲେ । କଳିଙ୍ଗ ବନ୍ଦରରୁ ଯେଉଁଦିନ ସେ ଦମ୍ପତ୍ତି ନୌକା ଯୋଗେ ସିଂହଳ ଉଦ୍ଦେଶ୍ୟରେ ଯାତ୍ରା କଲେ, ସେ ଦିନର ଦୃଶ୍ୟ ବଡ଼ କରୁଣ ତଥା ହୃଦୟ ବିଦାରକ ଥିଲା । ସହସ୍ର ସହସ୍ର ବୌଦ୍ଧଭିକ୍ଷୁ ସିନ୍ଧୁକୂଳରେ ଦଣ୍ଡାୟମାନ ହୋଇ ଅଶ୍ରୁସିକ୍ତ ନୟନରେ ହେମମାଳାଙ୍କ ନୌକାଆଡ଼କୁ ଚାହିଁ ରହିଥିଲେ । ମହାରାଜା ଗୁହଶିବ ରାଜପ୍ରାସାଦର ଶିଖରରେ ଦଣ୍ଡାୟମାନ ହୋଇ ଦୁଃଖାଭିଭୂତ ହୃଦୟରେ ପ୍ରଜାମାନଙ୍କର ଅସ୍ଥିରତା ଲକ୍ଷ୍ୟ କରୁଥିଲେ । ସେହି ମର୍ମନ୍ତୁଦ ଦୃଶ୍ୟ ଦେଖି ରାଜା ଶୋକାକୁଳ ହୋଇ ପଡ଼ିଲେ ତା' ପରେ ଧୀରେ ଧୀରେ ଦନ୍ତପୁର ମହାନଗରୀ ଶ୍ରୀହୀନ ହୋଇ ପଡ଼ିଲା ।

ସିଂହଳର ରାଜଧାନୀର ନାମଥିଲା ଅନୁରାଧାପୁର । ସେଠାରେ କଳିଙ୍ଗ ଦେଶର ମହାର୍ଘ ରତ୍ନ ସ୍ୱରୂପ ସେହି ପବିତ୍ର ଦନ୍ତକୁ ନେଇ ଯେଉଁ ଦିନ ଦନ୍ତକୁମାର ଓ ହେମମାଳା ଉପସ୍ଥିତ ହେଲେ, ସେଦିନ ସିଂହଳ ବାସୀଙ୍କର ଆନନ୍ଦ କହିଲେ ନ ସରେ । ସେ ଦମ୍ପତ୍ତି ନୌକାରୁ ଅବତରଣ କଲାମାତ୍ରେ ତାଙ୍କୁ ସହସ୍ର ବୌଦ୍ଧଭିକ୍ଷୁ ଓ ସାଧାରଣ ପ୍ରଜାବୃନ୍ଦ ଆନନ୍ଦୋଚ୍ଛ୍ୱାସରେ ଅଭିନନ୍ଦନ ଜଣାଇଲେ । ସିଂହଳର ମହାରାଜା ଶ୍ରୀ ମେଘବାହାନ ଅତି ଆଡ଼ମ୍ବର ସହକାରେ ସେହି ପବିତ୍ର ଦନ୍ତଦନ୍ତକୁ ହସ୍ତୀ ପୃଷ୍ଠରେ ନେଇ ସ୍ୱୟଂ ରାଜଧାନୀରେ ସ୍ଥାପନ କଲେ । ସେହି ଦିନଠାରୁ କଳିଙ୍ଗର ସେହି ପବିତ୍ର ଦନ୍ତ ସିଂହଳରେ ପୂଜିତ ହେଉଅଛି ।

ହେମମାଳା ଓ ଦନ୍ତକୁମାରଙ୍କ ବିବାହ ତଥା ପବିତ୍ର ଦନ୍ତର ଲାଭ ପରେ କଳିଙ୍ଗ ଓ ସିଂହଳର ରାଜନୈତିକ ତଥା ସାମାଜିକ ସମ୍ବନ୍ଧ ଦୃଢ଼ୀଭୂତ ହୋଇ ବହୁକାଳ ପର୍ଯ୍ୟନ୍ତ ଅବିଚ୍ଛିନ୍ନ ରହିଲା । ସେହି ସମୟରେ କଳିଙ୍ଗ ସହିତ ସିଂହଳର ବାଣିଜ୍ୟ ପ୍ରସାରଲାଭ କଲା । ସେଠାକାର ଜୈନଧର୍ମାବଲମ୍ବୀ ବହୁ ସଂଖ୍ୟକ ବଣିକ ଧୀରେ ଧୀରେ ବ୍ୟାପାର ଉଦ୍ଦେଶ୍ୟରେ ଆସି ମୋ ପୃଷ୍ଠରେ ବାସକଲେ । ସେମାନେ ଏ ଦେଶରେ ରହି ବାଣିଜ୍ୟର ପ୍ରସାର କରିବା ସଙ୍ଗେ ସଙ୍ଗେ ଅନେକ ଜୈନମନ୍ଦିର ମଧ୍ୟ ନିର୍ମାଣ କଲେ । କଳିଙ୍ଗବାସୀମାନେ ସେମାନଙ୍କୁ 'ସାଧୁ' ବା 'ସାଧକ' ନାମରେ ଅଭିହିତ କଲେ । ସେମାନଙ୍କ ସଂଖ୍ୟାକ୍ରମେ ବୃଦ୍ଧିଲାଭ କଲା । ଅଦ୍ୟାପି ତାଙ୍କର ବଂଶଧରଗଣ ଏ ଦେଶର ବିଭିନ୍ନ ଅଞ୍ଚଳରେ ରହିଛନ୍ତି । କିନ୍ତୁ ଅତି ପରିତାପର ବିଷୟ, ବର୍ତ୍ତମାନ ସେମାନେ ନିଜର ଜାତୀୟତା ସମ୍ପୂର୍ଣ୍ଣରୂପେ ବିସ୍ମୃତ ହୋଇ ଯାଇଛନ୍ତି । କୌଣସି ସମୟରେ ଆନ୍ଧ୍ରଦେଶ ସହିତ ସେମାନଙ୍କର ସମ୍ବନ୍ଧ ନ ଥିଲେହେଁ, ସେମାନେ ଅଜକାଲି ଆନ୍ଧ୍ରର ଭାଷା ଓ ରୀତିନୀତି ଅନୁକରଣ କରିବାକୁ ଲାଳାୟିତ ହେଉଛନ୍ତି ।

ଆଉ ଏକ ବୀରଜାତି କାଳକ୍ରମେ ଆସି ମୋ ପୃଷ୍ଠରେ ବାସ କରିବାକୁ ଲାଗିଲେ । ସେମାନେ ଏ ଦେଶରେ କାଳିଙ୍ଗୀନାମରେ ପରିଚିତ ଥିଲେ । କଳିଙ୍ଗର ବହୁ ଯୁଦ୍ଧରେ ସେମାନେ ସୁଦକ୍ଷ ପଦାତିକ ସେନାରୂପେ ଖୁବ୍ ଖ୍ୟାତିଅର୍ଜନ କରିଥିଲେ । ଆଜି ସେମାନେ ନିଜର ପରମ୍ପରା ପାସୋରିଦେଇ ପଙ୍ଗୁ ହୋଇ ପଡ଼ିଛନ୍ତି

ଯେଉଁ ନାବିକ ସମ୍ପ୍ରଦାୟ ପୂର୍ବେ କଳିଙ୍ଗ ସହିତ ସୁଦୂର ଦେଶର ସମ୍ପର୍କ ରକ୍ଷା-କରି ନୌକାଚାଳନାରେ କୃତିତ୍ୱ ଅର୍ଜନ କରିଥିଲେ, ସେମାନଙ୍କ ବଂଶଧରମାନେ ଅଦ୍ୟାପି 'ବାରଣି' ଓ 'କଳିଙ୍ଗପତ୍ତନ' ପ୍ରଭୃତି ବନ୍ଦର ଗୁଡ଼ିକରେ କୈବର୍ତ୍ତ ନାମରେ ପରିଚିତ । କେବଳ ମତ୍ସ୍ୟଜୀବୀରୂପେ ସେମାନେ ଜୀବିକା ନିର୍ବାହ କରି କାଳାତିପାତ କରୁଛନ୍ତି । ଦିନେ ଯେଉଁମାନଙ୍କୁ ସମ୍ମାନର ସହିତ ଦେଶରେ ସମାଦର କରାଯାଉଥିଲା, ସେମାନଙ୍କର ବଂଶଧରଗଣ ଆଜି ସମାଜରେ ସବୁଠାରୁବେଶୀ ଅବହେଳିତ ତଥା ଘୃଣିତ ଜାତିରୂପେ ଦୁଃଖମୟ ଜୀବନଯାପନ କରି କାଳାତିପାତ କରୁଛନ୍ତି । କାଳର କରାଳ ଆବର୍ତ୍ତରେ ପଡ଼ି କେତେବେଳେ ଉଚ୍ଚ ନୀଚ ହୋଇଯାଏ ଓ କେତେବେଳେ ନୀଚ ଉଚ୍ଚହୋଇ ସମାଜର ନେତୃତ୍ୱ ନିଏ, ଏହାହିଁ ଜଗତର ଇତିବୃତ୍ତରେ ଏକ ଅଦ୍ଭୁତ ରହସ୍ୟ !

## ୧୦

କଳିଙ୍ଗର ବିଭବରାଶି ଦେଖି ପଡ଼ୋଶୀ 'ବେଙ୍ଗିର'ର ଅଧିବାସୀ ଓ ଶାସକ କ୍ରମେ ଈର୍ଷ୍ୟାନ୍ୱିତ ହୋଇପଡ଼ିଲେ ଏବଂ ସୁଯୋଗ ନେଇ କଳିଙ୍ଗ ଆକ୍ରମଣ କରିବାର ଆୟୋଜନ କଲେ । କିନ୍ତୁ କଳିଙ୍ଗ ଦେଶ ସେତେବେଳେ ସୁଯୋଗବଶତଃ ଏକ ଶକ୍ତିଶାଳୀ ବୀରପୁରୁଷଙ୍କୁ ଶାସକରୂପେ ପାଇଥିଲା । ମାଠରବଂଶର ସେହି ସୁଯୋଗ୍ୟବୀରଙ୍କ ନାମ ଥିଲା 'ଶକ୍ତିବର୍ମା' । 'ବେଙ୍ଗି' ରାଜ୍ୟର ଉକ୍ତ ପ୍ରକାର ମନୋଭାବର ସୂଚନାପାଇ ସେ ବହୁସୈନ୍ୟ ସଂଗ୍ରହପୂର୍ବକ ଦାକ୍ଷିଣାତ୍ୟ ଅଭିଯାନରେ ବାହାରିଲେ । ବେଙ୍ଗିର 'ବିଷ୍ଣୁ-କୁଣ୍ଡୀ', ରାଜବଂଶ ଶକ୍ତିବର୍ମାଙ୍କ ପ୍ରବଳଶକ୍ତି ଆଗରେ ମସ୍ତକ ଅବନତ କଲା । ତେଣୁ 'କୃଷ୍ଣାବେଣୀ' କୂଳପର୍ଯ୍ୟନ୍ତ ସମସ୍ତ ଦକ୍ଷିଣାତ୍ୟ ଅଞ୍ଚଳ ଶକ୍ତିବର୍ମାଙ୍କ ଅଧୀନସ୍ତ ହେଲା । ସେ ଅଭିଯାନ ପରେ ସମଗ୍ର ଭାରତରେ ତାଙ୍କର ବିଜୟଭେରୀ ପ୍ରତିଧ୍ୱନିତ ହେଲା । ସେ କୃଷ୍ଣାବେଣୀକୁ 'ସକଳ କଳିଙ୍ଗ' ରାଜ୍ୟର ଦକ୍ଷିଣ ସୀମାରୂପେ ନିର୍ଦ୍ଧାରଣକରି ଅପାରଶକ୍ତି ପ୍ରଦର୍ଶନପୂର୍ବକ ପୂର୍ବାଞ୍ଚଳର ଅଭିଯାନରେ ଅଗ୍ରସର ହେଲେ । 'ମହାନଦୀ' ପର୍ଯ୍ୟନ୍ତ ନିର୍ବିଘ୍ନରେ ଅତିକ୍ରମକରି ସେହିଠାରେ ଶକ୍ତିବର୍ମାଶିବିର ସ୍ଥାପନ କଲେ । ତେଣୁ ପୂର୍ବାଞ୍ଚଳରେ ମହାନଦୀଠାରେ ତାଙ୍କ ରାଜ୍ୟର ସୀମା ଧାର୍ଯ୍ୟହେଲା । କୃଷ୍ଣାବେଣୀଠାରୁ ମହାନଦୀପର୍ଯ୍ୟନ୍ତ

ବିଶାଳରାଜ୍ୟର ପ୍ରଜାବୃନ୍ଦ ଶକ୍ତିବର୍ମାଙ୍କ ସୁଶାସନଫଳରେ ମହାସୁଖରେ କାଳାତିପାତ କଲେ । ତା'ପରେ ସେ 'ସକଳକଳିଙ୍ଗାଧିପତି' ଉପାଧିରେ ଭୂଷିତ ହେଲେ ।

ଶକ୍ତିବର୍ମାଙ୍କ ପରେ ମାଠରବଂଶୀୟ ରାଜାମାନେ କ୍ରମେ ଦୁର୍ବଳ ହୋଇପଡ଼ିଲେ । ତେଣୁ ସୀମାନ୍ତ ଅଞ୍ଚଳର ଶାସନକର୍ତ୍ତାମାନେ ସୁଯୋଗ କ୍ରମେ ସ୍ୱାଧୀନ ହୋଇ ଘୋର ବିପ୍ଲବ ପ୍ରଦର୍ଶନ କଲେ । ଗୋଦାବରୀ କୂଳରେ ଅବସ୍ଥିତ 'ଖଣ୍ଡପାଳ' ମାନେ ବିଦ୍ରୋହ ଆରମ୍ଭକଲେ । ସେହି ସୁଯୋଗରେ 'ପୃଥିବୀ ମହାରାଜ' ନାମକ ଜଣେ ରାଜା ସେହି ଅଞ୍ଚଳ ଅଧିକାର କରି 'ପିଷ୍ଟପୁର'ଠାରେ ତାଙ୍କ ରାଜଧାନୀ ସ୍ଥାପନକଲେ । ସେ 'ଶ୍ରୀରାମ-କାଶ୍ୟପ' ନାମକ ବଂଶରେ ଜନ୍ମଗ୍ରହଣ କରିଥିଲେ । ପୃଥିବୀ ମହାରାଜା ମାଠର-ମାନଙ୍କ ବିରୁଦ୍ଧରେ ଘୋର ଯୁଦ୍ଧ କରିଥିଲେ । ତାହାର ଫଳରେ ମାଠରବଂଶ ପୋଲ୍ଲ ଛାରଖାର ହୋଇ ଯାଇଥିଲା । ସେହିଦିନଠାରୁ ବହୁକାଳ ପର୍ଯ୍ୟନ୍ତ ମୋ ବକ୍ଷରେ କହିଃ ଶତ୍ରୁର ଅତ୍ୟାଚାର, ରକ୍ତପାତ, ଜନକ୍ଷୟ, ଦୁର୍ଭିକ୍ଷ ଓ ରାଜନୈତିକ ବିଶୃଙ୍ଖଳତା ଦେଖା ଦେଇଥିଲା ।

ମାଠରମାନଙ୍କ ବିଚ୍ଛେଦପରେ ପୃଥିବୀ ମହାରାଜାଙ୍କ ଔଜ୍ଜ୍ୱଲ୍ୟ କ୍ରମେ ବୃଦ୍ଧିଲାଭ କରିଥିଲା । ମୋ ବକ୍ଷରେ ସେ ରକ୍ତାକ୍ତ ଶକଟ ଚାଳିତ କରିଥିଲେ । ତେଣୁ ଉତ୍ତର-ସୀମାର ବୈତରଣୀ ତଟବର୍ତ୍ତୀ ବିରଜାନଗର ସମୀପରେ ସେ ସ୍କନ୍ଧାବାର ସ୍ଥାପନ କରି-ଥିଲେ । କିନ୍ତୁ ତାଙ୍କର ସେ ଔଜ୍ଜ୍ୱଲ୍ୟ ଅଳ୍ପକାଳ ମଧ୍ୟରେ ତିରୋହିତ ହୋଇଗଲା, କାରଣ ଆଉ ଏକ ପ୍ରବଳବାତ୍ୟା ପୂର୍ବୋତ୍ତର ଅଞ୍ଚଳରୁ ମାଡ଼ିଆସିଲା । 'ବିଗ୍ରହ' ଉପାଧି-ଧାରୀ କେତେକ ରାଜପୁତ୍ର ସୈନ୍ୟଚାଳନାକରି ବିରଜା ନଗରୀକୁ ଅଳ୍ପକାଳ ମଧ୍ୟରେ ଅଧିକାର କରିଗଲେ । ସେମାନେ ପ୍ରଥମେ ଗୁପ୍ତ ରାଜବଂଶର ଅଧୀନରେ ସାମନ୍ତରୂପେ ରହି 'କର୍ଣ୍ଣ-ସୁବର୍ଣ୍ଣ'ଠାରେ ରାଜ୍ୟ ସ୍ଥାପନ କରିଥିଲେ । ତାଙ୍କ ରାଜ୍ୟସୀମାକୁ ଲାଗି ଉତ୍କଳ ଓ କଳିଙ୍ଗ ଦକ୍ଷିଣ ଦିଗକୁ ପ୍ରସାରିତ ହୋଇଥିଲା । ତେଣୁ ସେମାନେ ସହଜରେ ସୈନ୍ୟ ଚାଳନ କରି କପିଶା ଲଙ୍ଘନପୂର୍ବକ ମୋ କୋଳରେ ଆସି ଉପସ୍ଥିତ ହେଲେ । ତାପରେ ସେମାନେ ସୁବର୍ଣ୍ଣରେଖା ପାରହୋଇ ବିରଜା ନଗରରେ ଶାସନ କରୁଥିବା ପୃଥିବୀ ମହାରାଜଙ୍କୁ ପରାସ୍ତକଲେ । ଏହାପରେ ସକଳ-କଳିଙ୍ଗ-ରାଜ୍ୟ, ଗୁପ୍ତ-ବଂଶର ଅଧିକାରଭୁକ୍ତ ହୋଇଗଲା । ଗୁପ୍ତମାନଙ୍କ ଅଧୀନରେ 'ବିଗ୍ରହ' ଉପାଧିଧାରୀ ରାଜାମାନେ କଳିଙ୍ଗର ଶାସନକର୍ତ୍ତାରୂପେ ନିଯୁକ୍ତହେଲେ । ସେମାନଙ୍କଦ୍ୱାରା ଏଦେଶରେ 'ଗୁପ୍ତାବ୍ଦ' ପ୍ରଚଳିତ ହେଲା । କଳିଙ୍ଗର ବହୁ ସାମନ୍ତରାଜା ସେମାନଙ୍କର ଆନୁଗତ୍ୟ ସ୍ୱୀକାର କଲେ । ବିଗ୍ରହମାନଙ୍କ ମଧ୍ୟରେ 'ପୃଥିବୀ ବିଗ୍ରହ' ଥିଲେ କଳିଙ୍ଗର ଶାସନକର୍ତ୍ତା । ତାଙ୍କ ଅଧୀନରେ

ଧର୍ମରାଜନାମକ ଜଣେ ସାମନ୍ତ ରାଜା ଶାସନକାର୍ଯ୍ୟ ନର୍ବାହକଲେ । ସେ ସୂର୍ଯ୍ୟଙ୍କର ଉପାସକ ରୂପେ ଏ ଦେଶରେ ପରିଚିତଥିଲେ । ସେତେବେଳେ ଏ ଦେଶବାସୀମାନେ ବିଷ୍ଣୁ, ଶିବ, ସୂର୍ଯ୍ୟ ଓ ମହାନାଗ ପ୍ରଭୃତି ଦେବତାମାନଙ୍କୁ ବୈଦିକ ରୀତିରେ ଉପାସନା କରୁଥିଲେ ।

ପୃଥ୍ୱୀ ବିଗ୍ରହଙ୍କ ପରେ କ୍ରମେ ଗୁପ୍ତବଂଶର ପତନ ଆରମ୍ଭ ହେଲା । ତା ଫଳରେ ସେମାନଙ୍କ ଅଧୀନସ୍ଥ ସାମନ୍ତରାଜାମାନେ ବିଦ୍ରୋହୀହୋଇ ସ୍ୱାଧୀନତା ଘୋଷଣା କଲେ । କେବଳ ସ୍ୱାଧୀନତା ଘୋଷଣାକରି ସେମାନେ ନୀରବ ହେଲେନାହିଁ, ବରଂ ପୂର୍ବଭାରତରେ ଗୋଟିଏ ନୂତନ ସାମ୍ରାଜ୍ୟ ଗଠନ କରିବାକୁ ସେମାନେ ଉଦ୍ୟତ ହେଲେ ।

ସେତିକିବେଳେ କର୍ଣ୍ଣ-ସୁବର୍ଣ୍ଣରେ ଶଶାଙ୍କନାମକ ଏକ ପରାକ୍ରମଶାଳୀ ରାଜା ଅବତୀର୍ଣ୍ଣ ହେଲେ । ସେ ଗୌଡ଼ଦେଶ ସମେତ ଉତ୍କଳ ଓ ତୋଷଳୀରାଜ୍ୟ ଅଧିକାର କଲେ । ମହେନ୍ଦ୍ରାଚଳଠାରେ ତାଙ୍କ ରାଜ୍ୟର ଦକ୍ଷିଣସୀମା ନର୍ଦ୍ଧାରିତ ହେଲା । ସେତେବେଳେ ଏ ଦେଶରେ 'କୋଙ୍ଗୋଦ' ନାମକ ଅନ୍ୟ ଗୋଟିଏ କ୍ଷୁଦ୍ରରାଜ୍ୟ ସଗଠିତ ହେଲା । ଚିଲିକାର ନୀଳ ବୀଚିମାଳା ସେ ରାଜ୍ୟର ପଦଧୌତକଲା । ଋଷିକୁଲ୍ୟାର ସ୍ୱଚ୍ଛ ଜଳପ୍ରବାହ ସେ ଦେଶରେ ମଧ୍ୟଭାଗରେ ପ୍ରବାହିତ ହୋଇ ଯଜ୍ଞୋପବୀତର ଶୋଭାଧାରଣ କଲା । କୃଷ୍ଣଗିରିର ଉନ୍ନତ ଶୃଙ୍ଗ କୋଙ୍ଗୋଦରାଜ୍ୟର ମୁକୁଟ ସଦୃଶ ପରିଶୋଭିତ ହେଲା । କଙ୍ଗୋଦରାଜ୍ୟର ସୁଦୂରବ୍ୟାପୀ ଅରଣ୍ୟାନୀ ଅସଂଖ୍ୟଗଜଯୂଥର କ୍ରୀଡ଼ାସ୍ଥଳୀରୂପେ ପ୍ରସିଦ୍ଧ ଲାଭ କରିଥିଲା । ବହୁ ଗିରିଦୁର୍ଗ, ଜଳପ୍ରପାତ ତପୋବନ, ଦେବମନ୍ଦିର, ନଗର, ପଲ୍ଲୀ, ଦୀର୍ଘିକାଦ୍ୱାରା ପରିପୂର୍ଣ୍ଣ ହୋଇ ସେ ରାଜ୍ୟ ସମୃଦ୍ଧିର ମାର୍ଗରେ ଅଗ୍ରସର ହେଲା । ଶତ ଶତ ଜଳଯାନ ବକ୍ଷରେ ଧାରଣ କରି, ଦିଗନ୍ତବ୍ୟାପୀ ନୀଳାମ୍ବୁ ଚିଲିକା ସେ ରାଜ୍ୟର ପ୍ରାକୃତିକ ପରିଖାରୂପେ ବିଦ୍ୟମାନଥିଲା । ସେହି ଶୋଭା ଦାୟକ କୋଙ୍ଗୋଦ ରାଜ୍ୟରେ ଗୋଟିଏ ନୂତନ ରାଜବଂଶ କ୍ରମେ ପ୍ରତିଷ୍ଠା ଲାଭକଲା । ସେ ରାଜ୍ୟର ଆଦିପୁରୁଷ ମହେନ୍ଦ୍ର ପର୍ବତୋପରି ଏକ ବୃହତ୍ ଶିଳାସ୍ତମ୍ଭ ଭେଦ କରି ଅବତୀର୍ଣ୍ଣ ହୋଇଥିବାରୁ ସେ ବଂଶର ରାଜାମାନେ "ଶୈଳୋଦ୍ଭବ" ନାମରେ ନାମିତ ହେଲେ । ସେ ରାଜାମାନଙ୍କ ସଭାରେ ବହୁ ବିଚକ୍ଷଣ କବି ପଣ୍ଡିତ ଅବସ୍ଥାନ କରୁଥିଲେ । ବହୁ ବ୍ରାହ୍ମଣମାନଙ୍କ ଯଜ୍ଞକର୍ମ ଓ ବେଦଧ୍ୱନିରେ ରାଜ୍ୟଟି ମୁଖରିତ ହୋଇ ଉଠୁଥିଲା । ସଂସ୍କୃତଭାଷାର ଆଦର ହବ୍ଦତ ଥିଲା । ସେଥି ସଙ୍ଗେ ସଙ୍ଗେ ଦେଶର ନାଗରିକ ସ୍ୱାଧୀନତା ତଥା ସଂସ୍କୃତି ଓ ସଭ୍ୟତା ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା । ମୋର କୋଳରେ ଆର୍ଯ୍ୟମାନେ ପୂର୍ବେ ବୈଦିକ ଯୁଗ ପରି ଯେଉଁ ପବିତ୍ର ଜୀବନ ଯାପନ କରୁଥିଲେ, ତାହାର ପୁନରାବୃତ୍ତି ବହୁ କାଳପରେ କୋଙ୍ଗୋଦରାଜ୍ୟରେ ପୁଣି ସମ୍ଭବ ହୋଇ ପାରିଥିଲା ।

ସେତେବେଳେ କର୍ଣ୍ଣସୁବର୍ଣ୍ଣଠାରୁ ଅରମ୍ଭକରି ସମଗ୍ର ଦକ୍ଷିଣରେ ଶଶାଙ୍କ ବ୍ରାହ୍ମଣ୍ୟଧର୍ମର ପ୍ରତିଷ୍ଠାନମିତ୍ତ ବହୁ ବୌଦ୍ଧସ୍ତୂପ ଭଗ୍ନକରି ଦେବ ମନ୍ଦିର ନିର୍ମାଣ କରୁଥିଲେ, ସେତେବେଳେ ଶୈଳୋଦ୍ଭବ ବଂଶରେ ମାଧବ ରାଜ ନାମକ ଜଣେ ପ୍ରତିଭା ସମ୍ପନ୍ନ ରାଜା ତାଙ୍କ ଅଧିନରେ ରହି କୋଙ୍ଗୋଦର ଶାସନ ପରିଚାଳନା କରୁଥିଲେ। ତାଙ୍କର ପାଣ୍ଡିତ୍ୟ, କବିତ୍ୱ ତଥା ଶାସନ କାର୍ଯ୍ୟରେ ବିଚକ୍ଷଣତା ଅଗାଧ ପ୍ରଶଂସନୀୟ ଥିଲା। ରାଜନୀତି କ୍ଷେତ୍ରରେ ସେ ଜଣେ ଧୂରନ୍ଧର ଓ ଅଦ୍ଭୁତ କର୍ମବୀର ରୂପେ ପରି-ଗଣିତ ହେଉଥିଲେ। ତେଣୁ ସେ କି ଉପାୟରେ ଦେଶକୁ ସ୍ୱାଧୀନ କରାଇ ନିଜକୁ ସମ୍ରାଟରୂପେ ଘୋଷିତ କରିବେ, ତାହାର ଉପାୟ ସବୁବେଳେ ଅନ୍ୱେଷଣ କରୁଥିଲେ। ସୌଭାଗ୍ୟକ୍ରମେ ସେତିକିବେଳେ ଗୋଟିଏ ସୁବର୍ଣ୍ଣ ସୁଯୋଗ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲା।

ଶଶାଙ୍କ ପୂର୍ବଭାରତର ଅତି ପ୍ରତିଭାଶାଳୀ ରାଜାରୂପେ ସେତେବେଳେ ସମଗ୍ର ଭାରତବର୍ଷରେ ବିଖ୍ୟାତ ଥିଲେ, ସେତେବେଳେ କାନ୍ୟକୁବ୍‌ଜରେ ପୁଷ୍ୟଭୂତି ରାଜବଂଶ ପ୍ରବଳ ପରାକ୍ରମର ସହିତ ଶାସନ କରୁଥିଲେ। ସେଠାକାର ରାଜା ରାଜ୍ୟବର୍ଦ୍ଧନଙ୍କୁ ଶଶାଙ୍କ ଏକ ଭୁମୁଳ ସଂଗ୍ରାମରେ ହତ୍ୟାକରନ୍ତେ, ତାଙ୍କ କନିଷ୍ଠ ସହୋଦର ହର୍ଷବର୍ଦ୍ଧନ ଭାତୃହତ୍ୟାର ପ୍ରତିଶୋଧ ନିମିତ୍ତ ବିପୁଳ ସଂଖ୍ୟକ ସୈନ୍ୟ ସଜ୍ଜିତ କରି ଶଶାଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ। ଉଭୟ ଶକ୍ତିଶାଳୀ ରାଜାଙ୍କ ମଧ୍ୟରେ ଭୁମୁଳ ସଂଗ୍ରାମ ଲାଗିଲା। ହର୍ଷବର୍ଦ୍ଧନଙ୍କ ସୈନ୍ୟମାନେ ପ୍ରବଳପରାକ୍ରମର ସହିତ କର୍ଣ୍ଣସୁବର୍ଣ୍ଣ ସମେତ ଶଶାଙ୍କ ଅଧିକୃତ ପ୍ରତ୍ୟେକ ରାଜ୍ୟକୁ ଭିନ୍ନ ଭିନ୍ନ ଦିଗରୁ ଅବରୋଧ କଲେ। ତାହାର ଫଳରେ ମୋ ବକ୍ଷରେ ଅବସ୍ଥିତ କୋଙ୍ଗୋଦ ଓ ତୋଷଳୀ ରାଜ୍ୟ କିଛୁକାଳ ଲାଗି ଏକ ଦୁର୍ଦ୍ଦିବାର ରଣଭୂମିରେ ପରିଣତ ହେଲା। ଏହି ଅପୂର୍ବ ପରାଧୀନ ଠାରୁ ସୁଯୋଗଲାଭ କରି ମାଧବରାଜ ନିଜକୁ ମୁକ୍ତ କରିବାକୁ ସକଳପ୍ରକାର ଉଦ୍ୟୋଗ କଲେ। ଏ ଘଟଣାର ଅଳ୍ପକାଳ ପରେ କୌଣସି ଏକ ଯୁଦ୍ଧରେ ଶଶାଙ୍କ ନିହତ ହୁଅନ୍ତେ, ମାଧବରାଜ ସଙ୍ଗେ ସଙ୍ଗେ ନିଜକୁ ଏକ ସ୍ୱାଧୀନ ରାଜାବୋଲି ଘୋଷଣା କରିଦେଲେ। କେବଳ ସେତିକି ନୁହେଁ, ମାଧବବର୍ମା ଶକ୍ତିଶାଳୀ ଶକ୍ତିବର୍ମାଙ୍କ ପରି 'ସକଳ କଳିଙ୍ଗାଧିପତି' ଉପାଧିରେ ଭୂଷିତ ହୋଇ ନିଜର ସ୍ୱତନ୍ତ୍ର ସତ୍ତା ବଜାୟ ରଖିଲେ। ଏ ଉଭୟ ଘଟଣା ମଧ୍ୟରେ ଯେଉଁ ରାଜନୈତିକ ରହସ୍ୟ ରହିଛି, ତାହା ମୋର ଘଟଣା ବହୁଳ ଜଟିଳ ସମସ୍ୟା ମଧ୍ୟରେ ଅନ୍ୟତମ।

ମାଧବରାଜ ଅଧିକ କାଳ 'ସକଳକଳିଙ୍ଗାଧିପତି' ଭାବରେ ନିଜର ସ୍ୱତନ୍ତ୍ର ସତ୍ତା ବଜାୟ ରଖି ପାରିଲେ ନାହିଁ। କାରଣ ସେହି ରାଜନୈତିକ ଅସ୍ଥିରତା ସମୟରେ ସୁଦୂର ଦକ୍ଷିଣ ଭାରତରୁ ଗୋଟିଏ ରାଜବଂଶ ଆସି ମହେନ୍ଦ୍ରାଚଳର ନିକଟବର୍ତ୍ତୀ ଶ୍ରେଷ୍ଠ

ଶ୍ରେଷ୍ଠ ରାଜ୍ୟଗୁଡ଼ିକୁ ନିଜର ଅଧିକାରଭୁକ୍ତ କରିନେଲେ । 'ଗାଙ୍ଗେୟ' ନାମରେ ସେମାନେ ପରିଚିତ ଥିଲେ । ସେମାନଙ୍କ ସମ୍ବନ୍ଧରେ ପ୍ରସଙ୍ଗକ୍ରମେ ମୁଁ ପରେ କହିବି ।

ସେହି ସଙ୍କଟଜନକ ସମୟରେ ଚୀନ ଦେଶରୁ ଜଣେ ପଣ୍ଡିତ ପରିବ୍ରାଜକ ବୌଦ୍ଧଭିକ୍ଷୁ ଏ ରାଜ୍ୟରେ ଭ୍ରମଣ କରୁଥିଲେ । ସେ ଯାହାଯାହା ଦେଖୁଥିଲେ, ସେ ସମସ୍ତ ବିଷୟ ଗୋଟିଏ ପୁସ୍ତକରେ ଲିପିବଦ୍ଧ କରି ରଖୁଥିଲେ । ଐତିହାସିକମାନଙ୍କ ନିକଟରେ ସେ ସୁପରିଚିତ, ତାଙ୍କ ନାମ 'ହୁଏନ୍‌ଚ୍ୟାଙ୍ଗ' ।

ତୋଷଲୀ ରାଜ୍ୟର ଚିତ୍ରୋତ୍ପଳା ସଙ୍ଗମ ସ୍ଥଳରେ 'ଚରିତ୍ର' ନାମକ ଏକ ସମୃଦ୍ଧି-ଶାଳୀ ବନ୍ଦରଥିଲା । ସେହି ବନ୍ଦର ନିକଟସ୍ଥ ସିନ୍ଧୁ କୂଳରେ ଅନେକ ବୌଦ୍ଧବିହାର ମଧ୍ୟ ପ୍ରତିଷ୍ଠିତ ହୋଇଥିଲା । ସେଠାକାର ଏକ ବୌଦ୍ଧ ବିହାରରେ ଅବସ୍ଥାନକରି ସେହି ଚୀନ ପରିବ୍ରାଜକ ଦିନେ ଗଭୀର ଅନ୍ଧକାର ରାତିରେ ଦୂରଦିଗ୍‌ବଳୟର ତମିସ୍ରା ଭେଦକରି ଉଜ୍ଜ୍ୱଳ ତାରକା ସଦୃଶ ଏକ ଆଲୋକରେଖା ଦେଖିଲେ । ବହୁକ୍ଷଣ ସେଥିପ୍ରତି ନିରୀକ୍ଷଣ କରିବାପରେ ସେ ସେହି ଆଲୋକରେଖା ସମ୍ବନ୍ଧରେ ଅନ୍ୟାନ୍ୟ ଭିକ୍ଷୁମାନଙ୍କୁ ପଚାରିଲେ । ପରିଶେଷରେ ସେ ଜାଣିଲେ ଯେ, ତାହା ଏକ ବୌଦ୍ଧମନ୍ଦିର ଚୂଡ଼ାରେ ସ୍ଥାପିତ ଦୀପଶିଖା, ବହୁପୂର୍ବରୁ ଶବରମାନଙ୍କ ଦ୍ୱାରା ପୂଜିତ ଏକ କାଷ୍ଠସ୍ତମ୍ଭ ପରବର୍ତ୍ତୀ-କାଳରେ ବୌଦ୍ଧ ବିଗ୍ରହରେ ପରିଣତ ହୋଇଛି । ସେଥିରେ ଜଗତ୍‌କର୍ତ୍ତାଙ୍କର ବୁଦ୍ଧସ୍ୱରୂପ ବିଦ୍ୟମାନ । ତାହାଶୁଣି ସେହି ଉଜ୍ଜ୍ୱଳ ଦୀପଶିଖା ସମ୍ବନ୍ଧରେ ହୁଏନ୍‌ଚ୍ୟାଙ୍ଗ ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଉଲ୍ଲେଖ କଲେ ।

ଆଜି ମଧ୍ୟ ମୋର ସ୍ମରଣ ହୁଏ, ସେହି ବାଲୁକାକୀର୍ଣ୍ଣ ନୀଳଜଳଧି ତରଙ୍ଗ ପରିଧୌତ ବେଳାଭୂମିରେ ଦିନେ ଶବରମାନେ ବାସ କରୁଥିଲେ । ସେମାନେ କେତୋଟି କାଷ୍ଠସ୍ତମ୍ଭ ପ୍ରୋଥିତ କରି ସେଠାରେ ସ୍ୱକଳ୍ପିତ ଦେବ ବିଗ୍ରହର ପୂଜା କରୁଥିଲେ, ଯେଉଁ ସ୍ତମ୍ଭ କାଳକ୍ରମେ ବୌଦ୍ଧ ବିଗ୍ରହରେ ପରିଣତ ହେଲା । ପୁଣି କାଳର ପରିବର୍ତ୍ତନଶୀଳ ପ୍ରବାହରେ ପଡ଼ି ସେ ବିଗ୍ରହ ଅଦ୍ଭୁତ ଆକୃତି ଧାରଣପୂର୍ବକ ପୁରୁଷୋତ୍ତମ ନାମରେ ପରିଚିତହେଲା । ସମସ୍ତ ଧର୍ମାବଲମ୍ବୀ ତାଙ୍କୁ ଆରାଧନା କରିବା ଫଳରେ ସେହି ବିଗ୍ରହ 'ଜଗନ୍ନାଥ' ନାମ ଧାରଣ କଲେ । ମୋର ସନ୍ତାନମାନେ ଆଜିସୁଦ୍ଧା ସେହି ଜଗନ୍ନାଥଙ୍କ ମହିମାହେତୁ ଭାରତରେ ସମ୍ମାନ ଲାଭ କରନ୍ତି । ଏ ଘଟଣାର ବହୁକାଳ ପରେ ସେଠାରେ କିପରି ଏକ ଗଗନଚୁମ୍ବୀ ମନ୍ଦିର ନିର୍ମିତ ହେଲା, ସେ ବିଷୟରେ ମୁଁ ପରେ କହିବି ।

ଯେଉଁ 'ମହାଦୀପ' ସେହି ବେଳାଭୂମିରେ ପ୍ରଜ୍ଜ୍ୱଳିତ ହୋଇଥିଲା, ସେହିପରି ଅସଂଖ୍ୟ ପ୍ରଦୀପ ଶରତ୍‌କାଳରେ ମୋ ବକ୍ଷରେ ଭିନ୍ନସ୍ଥାନରେ ପ୍ରଜ୍ଜ୍ୱଳିତ ହୁଏ,

କାରଣ ବର୍ଷାକାଳପରେ ଶରଦାଗମରେ ସ୍ୱଦେଶରୁ ଯାତ୍ରୀସମୂହ ବିଭିନ୍ନପଥରେ ଏ ଦେଶକୁ ଆସନ୍ତି; ପୁଣି ବନ୍ଦର ଗୁଡ଼ିକରୁ ନୌକାଯୋଗେ ଗନ୍ତବ୍ୟସ୍ଥଳକୁ ଗମନ କରନ୍ତି । ସେମାନଙ୍କ ସୁବିଧା ନିମନ୍ତେ ଅନେକଗୁଡ଼ିଏ ପାନ୍ଥଶାଳା ଓ ଧର୍ମାନୁଷ୍ଠାନ ମଧ୍ୟ ଏ ଦେଶରେ ନିର୍ମାଣ ହୋଇଥିଲା । ରାତ୍ରି କାଳରେ ପଥହରା ବୈଦେଶିକ ଯାତ୍ରୀମାନଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚାଇବା ଉଦ୍ଦେଶ୍ୟରେ ଉଚ୍ଚସ୍ଥାନରେ ମହାଦୀପ ପ୍ରଜ୍ୱଳିତ କରିବା ପ୍ରଥା ମୋର ସନ୍ତାନମାନେ ଉଦ୍ଭାବନ କରିଥିଲେ । କିନ୍ତୁ ସେ ପ୍ରକାର ସଦ୍ଭାବନା ମନରେ ପୋଷଣ କରି ଆଜିକାଲି କେହି ମହାଦୀପ ପ୍ରଜ୍ୱଳନ କରୁନାହାନ୍ତି । ତାହା ଆଜିକାଲି ଏକ ସାମାଜିକ ପ୍ରଥାରେ ପରିଣତ ହୋଇଛି । ଏପରି ବହୁ ପ୍ରାଚୀନ ପ୍ରଥା ଆଜିକାଲି ଅର୍ଥଶୂନ୍ୟ ଭାବରେ ସମାଜରେ ପାଳିତ ହେଉଛି, କିନ୍ତୁ ତା'ର ପ୍ରକୃତ ଉଦ୍ଦେଶ୍ୟ ବା ମୌଳିକ ଲକ୍ଷ୍ୟ ଲୋକେ ବିସ୍ମୃତ ହୋଇ ଗଲେଣି । ମାନବ ଚରିତ୍ରର ଏହା ଏକ ବିଚିତ୍ର ବୈଶିଷ୍ଟ୍ୟ !

## ୧୧

କଙ୍ଗୋଦର ଶୈଳୋଦ୍ଭବବଂଶୀୟ ରାଜନ୍ୟବର୍ଗ ବହୁ ଯାଗଯଜ୍ଞ କରି ବ୍ରାହ୍ମଣମାନଙ୍କୁ ଶାସନାବଳୀ ଦାନ କରିଥିଲେ । ସେହି ରାଜବଂଶରେ ବହୁ ପ୍ରଖ୍ୟାତନାମା ରାଜା ଜନ୍ମଗ୍ରହଣ କରିଥିଲେ । ତାଙ୍କ ମଧ୍ୟରେ ମହାରାଜ ଧର୍ମରାଜଙ୍କ ନାମ ଉଲ୍ଲେଖଯୋଗ୍ୟ । ତାଙ୍କ ପିତା ମଧ୍ୟମରାଜଙ୍କଠାରୁ ଦୁଇପୁତ୍ର ଧର୍ମରାଜ ଓ ଦ୍ୱିତୀୟପୁତ୍ର ମାଧବବର୍ମା । ମଧ୍ୟମରାଜଙ୍କ ମୃତ୍ୟୁପରେ କନିଷ୍ଠପୁତ୍ର ମାଧବ ଔଦ୍ଧତ୍ୟ ଓ ମିଥ୍ୟାହଂକାରରେ ବଶବର୍ତ୍ତୀ ହୋଇ ରାଜ୍ୟଟିକୁ ବଳାତ୍କାରରେ ଅଧିକାର କରିବାକୁ ମନସ୍ଥ କଲେ ।

ସେତେବେଳେ ଦକ୍ଷିଣ କୋଶଳର ପାଣ୍ଡୁ ରାଜବଂଶରେ 'ମହାଶିବ ତୀବର ଦେବ' ନାମକ ଜଣେ ଅଦ୍ଭୁତକର୍ମା ଯଶସ୍ୱୀ ରାଜା ରାଜତ୍ୱ କରୁଥିଲେ । ସେ 'ସକଳ କୋଶଳାଧୀଶ୍ୱର' ଉପାଧିରେ ଭୂଷିତ ହୋଇଥିଲେ । ତାଙ୍କଠାରୁ ସାହାଯ୍ୟପାଇ ମାଧବବର୍ମା ସ୍ୱୀୟ ଜ୍ୟେଷ୍ଠଭ୍ରାତାଙ୍କୁ ସିଂହାସନରୁ ବିତାଡ଼ିତ କରନ୍ତେ, ରାଜ୍ୟର ଅନ୍ୟ ସାମନ୍ତରାଜମାନେ ତାଙ୍କୁ ସମର୍ଥନ ନଜଣାଇ ଧର୍ମରାଜାଙ୍କୁ ପୂର୍ଣ୍ଣପ୍ରାଣରେ ସମର୍ଥନ ଜଣାଇଲେ । କାରଣ ଧର୍ମଶାସ୍ତ୍ର ପ୍ରତି ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ଫଳରେ 'ଫାଶିକ' ନାମକ ସ୍ଥାନରେ ଯୁଦ୍ଧକ୍ଷେତ୍ର ନିର୍ଦ୍ଦିଷ୍ଟ ହେଲା । ଦକ୍ଷିଣ କୋଶଳର ବହୁ ସୈନ୍ୟ ସମବେତହୋଇ ସେ ଯୁଦ୍ଧରେ ମାଧବଙ୍କ ପକ୍ଷ ସମର୍ଥନକଲେ । ଉଭୟ ବଳମଧ୍ୟରେ ଭୀଷଣ ଲୋମହର୍ଷଣ ଯୁଦ୍ଧ ଅନୁଷ୍ଠିତ ହେଲା । ପରିଶେଷରେ ଧର୍ମରାଜ୍ଞ ଜୟୀ ହେଲା । ତୀବରଦେବଙ୍କ ସମେତ

ମାଧବବର୍ମା ସେ ଯୁଦ୍ଧରେ ପରାଜିତ ହୋଇ କୋଶଳରୁ ପଳାୟନ କଲେ । ଏ ଦେଶରେ କେହିହେଲେ ବିଦ୍ରୋହୀ ମାଧବବର୍ମାଙ୍କୁ ଆଶ୍ରୟ ଦେଲେନାହିଁ । ତେଣୁ ସେ ଶବରଦେବ ରାଜ୍ୟ ବିନ୍ଧ୍ୟ ପାଦରେ ଆତ୍ମଗୋପନ କରି ରହିଲେ । ସେଠାରୁ ଆଉ ସେ କେବେ-ହେଲେ ଫେରିଲେ ନାହିଁ ।

'ଫାଶିକ' ରଣ ଭୂମିରେ ଧର୍ମରାଜଙ୍କର ଜୟହେଲା ସତ୍ୟ, କିନ୍ତୁ ସେହି ଗୃହ ବିବାଦର ପରିଣତି ଭୟାବହ ହୋଇ ଉଠିଲା ଏବଂ ସେହି ଭୀଷଣ ଯୁଦ୍ଧରେ ରାଷ୍ଟ୍ରର ସାମରିକ ଶକ୍ତି ନିତାନ୍ତ ଦୁର୍ବଳ ହୋଇପଡ଼ିଲା । ସେହି ସୁଯୋଗରେ ବାହାରର ଶତ୍ରୁ-ମାନେ ସୁବିଧା ହାସଲ କରିବାକୁ ଲାଗିଲେ । ମୋର ପୂର୍ବୋତ୍ତର ଦିଗରୁ ଅର୍ଥାତ୍ କର୍ଣ୍ଣ-ସୁବର୍ଣ୍ଣ' ଆଡୁ ମୁହୁର୍ମୁହୁ ଶତ୍ରୁମାନେ ଆକ୍ରମଣ କଲେ । ଏହି ଆକ୍ରମଣ ଫଳରେ ଶୈଳୋଦ୍ଭବ ରାଜବଂଶ ଧ୍ୱଂସପ୍ରାପ୍ତ ହୋଇଗଲା ଏବଂ ତା,ର ବଂଶଧରଗଣ ଦକ୍ଷିଣକୁ ପଳାୟନ କଲେ । ମହେନ୍ଦ୍ରାଚଳ ନିକଟରେ ସେତେବେଳେ ପ୍ରବଳ ପ୍ରତାପୀ ଗଙ୍ଗବଂଶୀୟ ରାଜାମାନେ ବିକ୍ରମ ସହକାରେ ରାଜତ୍ୱ କରୁଥିବାରୁ ଶୈଳୋଦ୍ଭବମାନେ ସେଠାରେ କୌଣସି ଏକ ପାର୍ବତ୍ୟ ପ୍ରଦେଶରେ ଆଶ୍ରୟଗ୍ରହଣ କଲେ ।

'କଙ୍ଗୋଦ' ରାଜ୍ୟ ପ୍ରଥମେ ଯେତେବେଳେ ସ୍ୱାଧୀନତା ଘୋଷଣା କଲେ , ସେତେ-ବେଳେ ସେଠାରେ ମାଧବରାଜ ନାମକ ଶୈଳୋଦ୍ଭବ ବଂଶର ଉଜ୍ଜ୍ୱଳରତ୍ନ ସ୍ୱରୂପ ଜଣେ ଶକ୍ତିଶାଳୀରାଜା ଅବସ୍ଥାନ କରି 'ସକଳ କଳିଙ୍ଗାଧିପତି' ଉପାଧିରେ ଭୂଷିତ ହୋଇଥିଲେ ମଧ୍ୟ ଅଳ୍ପକାଳ ପରେ ସେ ଉପାଧି ତ୍ୟାଗ କରିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ସ୍ୱଭୁଜୋପାର୍ଜିତ ଉପାଧି ସେ କାହିଁକି ପରିତ୍ୟାଗ କଲେ, ଏ କଥା ମୁଁ ବର୍ତ୍ତମାନ କହିବାକୁ ଯାଉଛି ।

ଯେତେବେଳେ କାନ୍ୟକୁବ୍ଜାଧୀଶ୍ୱର ମହାରାଜା ହର୍ଷବର୍ଦ୍ଧନ କର୍ଣ୍ଣସୁବର୍ଣ୍ଣରାଜା ଶଶାଙ୍କଙ୍କୁ ଯୁଦ୍ଧରେ ନିହତ କରି ଏ ଦେଶରେ ଆଧିପତ୍ୟ ବିସ୍ତାର କରିବାକୁ ଆସିଲେ, ସେତେବେଳେ ଦୂର ଦାକ୍ଷିଣାତ୍ୟରେ ଚାଲୁକ୍ୟ ରାଜବଂଶୀୟ ପୁଲକେଶୀ ନାମକ ଜଣେ ପରାକ୍ରମଶାଳୀ ରାଜା ରାଜତ୍ୱ କରୁଥିଲେ । ସେ ହର୍ଷଙ୍କର କ୍ରମବର୍ଦ୍ଧମାନ ଭାଗ୍ୟଲକ୍ଷ୍ମୀରେ ଅସହିଷ୍ଣୁ ହୋଇ ତାଙ୍କ ବିରୁଦ୍ଧରେ ଅସ୍ତ୍ର ଉତ୍ତୋଳନ କଲେ । ନର୍ମଦା ତଟରେ ଉଭୟଙ୍କ ମଧ୍ୟରେ ତୁମୁଳ ଯୁଦ୍ଧ ହେଲା । ସେହି ଲୋମହର୍ଷଣକାରୀ ଯୁଦ୍ଧର ବିଭୀଷିକା ମଧ୍ୟରେ ଯେଉଁ ସନ୍ଧିଚୁକ୍ତି ହେଲା, ତା ଫଳରେ ହର୍ଷବର୍ଦ୍ଧନ ବିନ୍ଧ୍ୟାଚଳ ଅତିକ୍ରମ କରି ଦକ୍ଷିଣକୁ ଅଗ୍ରସର ହେବେନାହିଁ ବୋଲି ଚୁକ୍ତିରେ ଆବଦ୍ଧ ହେଲେ ।

ଏ ଘଟଣାର କିଛିକାଳ ପରେ ପୁଲକେଶୀଙ୍କ ଭ୍ରାତା ବିଷ୍ଣୁବର୍ଦ୍ଧନ ବହୁ ସୈନ୍ୟ ଗହଣରେ ଏ ରାଜ୍ୟରେ ପ୍ରବିଷ୍ଟ ହେଲେ । କିନ୍ତୁ ତାଙ୍କ ଆଗମନ ପୂର୍ବର ଦାକ୍ଷିଣାତ୍ୟ

ଗଙ୍ଗା'ମାନେ ଆସି ମୋ ବକ୍ଷରେ ସୈନ୍ୟ ସମାବେଶ କରିଥିଲେ । ସେମାନେ ମାଧବ-ରାଜାଙ୍କୁ ତଡ଼ିଦେଇ ମହେନ୍ଦ୍ରାଚଳ ସମେତ ପୂର୍ବଘାଟ ପର୍ବତମାଳାର ବହୁ ପାର୍ବତ୍ୟ ଅଞ୍ଚଳ ଅଧିକାର କଲେ । ସେମାନେ ଗୋଦାବରୀ ନଦୀ ଅତିକ୍ରମ କରି ବଂଶଧାରା କୂଳରେ ଦନ୍ତପୁର ଅଧିକାରପୂର୍ବକ ,ତ୍ରିକଳିଙ୍ଗାଧିପତି' ଉପାଧିରେ ବିଭୂଷିତ ହେଲେ । ତାଙ୍କ ଆଗମନର ଅବ୍ୟବହିତ ସମୟ ପରେ ଚାଲୁକ୍ୟ ବଂଶୀୟ ରାଜା ବିଷ୍ଣୁବର୍ଦ୍ଧନ ସୈନ୍ୟ ପରିଚାଳନା କରି ଗୋଦାବରୀତଟବର୍ତ୍ତୀ ରାଜ୍ୟ ଅଧିକାର କଲେ । ସେଠାରେ ବେଙ୍ଗୀ ରାଜ୍ୟ ତାଙ୍କର କରଗତ ହେଲା । ସେ 'ପିଷ୍ଟପୁର' ଠାରୁ ଶାସନ କାର୍ଯ୍ୟ ଚଳାଇଲେ ।

ମୋ ପୃଷ୍ଠର ଦନ୍ତପୁରଠାରେ କିଛିକାଳ ଅବସ୍ଥାନକରି ଗଙ୍ଗବଂଶୀୟ ରାଜା ଇନ୍ଦ୍ରବର୍ମା ଚାଲୁକ୍ୟମାନଙ୍କ ସହ ଘୋରତର ଯୁଦ୍ଧରେ ବ୍ୟାପୃତ ହେଲେ । ସେତେବେଳେ ବେଙ୍ଗୀର ଶାସକ ଥିଲେ ବିଷ୍ଣୁବର୍ଦ୍ଧନଙ୍କ ପରବର୍ତ୍ତୀ ଶାସକ ଇନ୍ଦ୍ରଭଟ୍ଟାରକ । ତାଙ୍କ ସହିତ ଗଙ୍ଗାବଂଶୀୟ ଇନ୍ଦ୍ରବର୍ମାଙ୍କର ଘୋର ଯୁଦ୍ଧହେଲା । ଦିନେ ଗୋଟିଏ ସୁସଜ୍ଜିତ ହସ୍ତୀପୃଷ୍ଠରେ ବସି ରଣାଙ୍ଗନରେ ଇନ୍ଦ୍ରବର୍ମା ଗୋଟିଏ କୁନ୍ତ ପ୍ରହାର କଲେ । ତାହା ଅନ୍ୟ ଏକ ହସ୍ତୀ ପୃଷ୍ଠରେ ସମାସୀନ ଚାଲୁକ୍ୟବଂଶୀୟ ରାଜା ଇନ୍ଦ୍ରଭଟ୍ଟାରକଙ୍କ ହୃଦୟ ବିଦ୍ଧକଲା । ଆକସ୍ମିକ ଭାବରେ ସେ ହସ୍ତୀପୃଷ୍ଠରୁ ତଳ ପଡ଼ିଗଲେ, ତାଙ୍କ ସୈନ୍ୟବାହିନୀ ଗୋଦାବରୀ ତଟରୁ ଦକ୍ଷିଣକୁ ପଳାୟନ କଲେ । ସେହିଦିନ ଠାରୁ ଗୋଦାବରୀ ନଦୀ ମୋର ଦକ୍ଷିଣସୀମା ରୂପେ ସ୍ୱୀକୃତ ହେଲା । ସେ ବିଜୟର ସ୍ମାରକ ସ୍ୱରୂପ ସେହିଦିନଠାରୁ 'ଗାଙ୍ଗେୟବଂଶ ବିଜୟ ରାଜ୍ୟ ସମ୍ୱତ୍ସର" ନାମରେ ଏକ ନୂତନ ଅବ୍ଦ ପ୍ରଚଳିତ ହେଲା ।

ଗଙ୍ଗବଂଶୀୟ ଅନ୍ୟଏକ ବୀରରାଜା ହସ୍ତୀବର୍ମା ରାଜଧାନୀ ଉଦ୍ଦେଶ୍ୟରେ ବଂଶଧାରା ନଦୀ କୂଳରେ ଗୋଟିଏ ସୁନ୍ଦର ନଗର ନିର୍ମାଣ କଲେ । ସେ ନଗରର ନାମ ରଖାଗଲା 'କଳିଙ୍ଗନଗର' । ଗଙ୍ଗ ବଂଶର ପରବର୍ତ୍ତୀ ରାଜାମାନେ ଦୀର୍ଘ ପାଞ୍ଚବର୍ଷ ସମୟ ସେହି ରାଜଧାନୀରେ ରହି ରାଜ୍ୟଶାସନ କରିଥିଲେ । କାଳର କରାଳ ପ୍ରବାହରେ ପଡ଼ି ସେ ମହାନଗରୀ ଧ୍ୱଂସମୁଖରେ ପଡ଼ିଥିଲେ ସୁଦ୍ଧା, ଅଦ୍ୟାପି ବଂଶଧାରା ତଟରେ ସେହି ପ୍ରାଚୀନ ରାଜଧାନୀର ବହୁଚିହ୍ନ ପରିଦୃଷ୍ଟ ହୁଏ ।

ଗଙ୍ଗାବଂଶୀୟ ରାଜାମାନେ 'ପରମମାହେଶ୍ୱର' ଉପାଧିରେ ଭୂଷିତ ହୋଇଥିଲେ । ମହେନ୍ଦ୍ରାଚଳର ଉପରି ଭାଗରେ । ପୂର୍ବେ ଯେଉଁ ଶବର ପୂଜିତ କାଷ୍ଠସ୍ତମ୍ଭ ନିକଟରେ ଦିନେ ଗୁପ୍ତବଂଶୀୟ ମହାରାଜା ସମୁଦ୍ରଗୁପ୍ତଙ୍କ ନେତୃତ୍ୱରେ ଆସିଥିବା ବୀରମାନେ ପ୍ରଣତହୋଇ ତାକୁ 'ଗୋକର୍ଣ୍ଣେଶ୍ୱର' ନାମରେ ନାମିତ କରିଥିଲେ, ତାହା ଗଙ୍ଗାବଂଶୀୟ ରାଜାମାନଙ୍କ ସମୟରେ ତାଙ୍କର କୁଳଦେବତା ରୂପେ ପରିଚିତ ହୋଇଥିଲେ । ଏ ବଂଶର ବୀରତ୍ୱ ଓ ଧର୍ମପ୍ରାଣତା ସୁଦୂର ଦେଶମାନଙ୍କରେ ପ୍ରସାର ଲାଭ କରିଥିଲା ।

ମୋର ମନେ ପଡୁଛି, ଥରେ ଜଣେ ମୁଣ୍ଡିତ ମସ୍ତକ ଦଣ୍ଡଧାରୀ ତରୁଣ ସନ୍ନ୍ୟାସୀ ବହୁଶିଷ୍ୟ ଗହଣରେ ସୁଦୂର ଦାକ୍ଷିଣାତ୍ୟରୁ ଆସି ମୋ ପୃଷ୍ଠରେ ପଦାର୍ପଣ କଲେ । ଲୋକମାନେ ତାଙ୍କୁ ଭକ୍ତିପୂତ ଚିତ୍ତରେ ପ୍ରଣାମ ପୂର୍ବକ ସ୍ୱୟଂ ଶଙ୍କର ସ୍ୱରୂପ ବୋଲି ସମାଦର କରୁଥିଲେ । ତାଙ୍କର ଅଲୌକିକ ପ୍ରତିଭା ଓ ବିଦ୍ୱତ୍ତା ସମ୍ମୁଖରେ ବହୁପ୍ରାଚୀନ ପଣ୍ଡିତ ପରାଜୟ ସ୍ୱୀକାର କଲେ । ତାଙ୍କର ଶାନ୍ତ ମୁଖମଣ୍ଡଳ ଦେଖି ଲୋକଙ୍କ ମନରେ ସ୍ୱତଃ ଶ୍ରଦ୍ଧା ଓ ଭକ୍ତିଭାବ ଜାତ ହେଉଥିଲା । କବିତ୍ୱ କ୍ଷେତ୍ର ମଧ୍ୟ ତାଙ୍କର ଅତି ଅଦ୍ଭୁତ ଥିଲା । ସେ ଦୈବଶକ୍ତି ବଳରେ ଆଶୁରଚନା କରି ଲୋକମାନଙ୍କୁ ବିସ୍ମୟାଭିଭୂତ କରୁଥିଲେ । ସେହି ବିଦେଶୀ ତରୁଣ ସନ୍ନ୍ୟାସୀଙ୍କ ନାମ ଥିଲା 'ଶଙ୍କରାଚାର୍ଯ୍ୟ' ।

ମୋ ଉପରେ ବିଚରଣ କରି ସେ ଯେତେବେଳେ ଆର୍ଯ୍ୟାବର୍ତ୍ତ ଅଭିମୁଖରେ ଗମନ କଲେ ସେତେବେଳେ ଏ ଦେଶର ଶାସକ ତାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ରାଜା ତାଙ୍କଠାରୁ ଦୀକ୍ଷାଗ୍ରହଣ କରି ବହୁ ମୂଲ୍ୟବାନ ବସ୍ତୁ ଦକ୍ଷିଣା ସ୍ୱରୂପ ପ୍ରଦାନ କଲେ । ମାତ୍ର ସଂସାର ବିରାଗୀ ସେହି ବ୍ରାହ୍ମଣଙ୍କର କୌଣସି ପାର୍ଥିବ ଦ୍ରବ୍ୟ ପ୍ରତି ତିଳେହେଲେ ମୋହ ନଥିଲା । ସେ ସେଗୁଡ଼ିକୁ ଶିଷ୍ୟମାନଙ୍କ ମଧ୍ୟରେ ବିତରଣ କରିଦେଉଥିଲେ । ସେଦିନ ଅସଂଖ୍ୟ ହସ୍ତୀ ବିବିଧ ସାଜରେ ମଣ୍ଡିତ ହୋଇ ସେହି ଯୁବାସନ୍ନ୍ୟାସୀଙ୍କର ପଦଯାତ୍ରାବେଳେ ଉଭୟ ପାର୍ଶ୍ୱରେ ଶୁଣ୍ଢ ଉତ୍ତୋଳନ କରିବା ଦୃଶ୍ୟ ଆଜି ସୁଦ୍ଧା ମୋ ମାନସ ପଟଳରେ ଅଙ୍କିତ ହୋଇ ରହିଛି । ଶ୍ରେଣୀବଦ୍ଧ ଭାବରେ ନଗରର ତୋରଣଦ୍ୱାର ପର୍ଯ୍ୟନ୍ତ ରାଜପଥର ଦୃଶ୍ୟ ସେଦିନ ଯେଉଁ ଅପରୂପ ଶୋଭାଧାରଣ କରିଥିଲା, ତାହା ଆଜି ଭାଷାରେ ପ୍ରକାଶ କରିବା ସମ୍ଭବ ନୁହେଁ !

କିଛିଦିନ ପରେ ଠିକ୍ ସେହି କଳିଙ୍ଗ ନଗରର ତୋରଣ ନିକଟସ୍ଥ ରାଜପଥରେ ଶତ୍ରୁର ବିଜୟ ଡଙ୍କା ନିନାଦିତ ହୋଇ ପ୍ରଜାବୃନ୍ଦଙ୍କ ଆତଙ୍କ ସୃଷ୍ଟି କଲା । ଅସଂଖ୍ୟ ସୈନ୍ୟ ମଧ୍ୟଭାରତରୁ ଆସି ମୋର ବକ୍ଷ ପଦଦଳିତ କରି ଚାଲିଥାନ୍ତି । ପରେ ଶୁଣାଗଲା, 'ରାଷ୍ଟ୍ରକୂଟ' ବଂଶର ଜଣେ ବିଜୟାଭିଳାଷୀ ରାଜା ଦିଗ୍‌ବିଜୟ ଉଦ୍ଦେଶ୍ୟରେ ଉତ୍ତରାପଥ ଅଭିମୁଖରେ ଚାଲିଛନ୍ତି । ତାଙ୍କର ସେହି ସୈନ୍ୟପରିଚାଳନା ଫଳରେ ବହୁଗ୍ରାମ, ଜନପଥ, ନଗର ଜନଶୂନ୍ୟ ହୋଇଗଲା । ରକ୍ତଧାରାରେ ପୃଥିବୀ ରଞ୍ଜିତ ହେଲା । ସେଦିନ ମୁଁ ଅନୁଭବ କଲି, ପୃଥିବୀରେ ମନୁଷ୍ୟ ଗୋଟିଏ ଆଶ୍ଚର୍ଯ୍ୟକର ଜୀବ । ଯେଉଁ ରାଜପଥରେ ସେଦିନ ତରୁଣ ସନ୍ନ୍ୟାସୀ ବିଚରଣ କରି ଲୋକମାନଙ୍କ ଉପରେ ଶାନ୍ତିଧାରା ବର୍ଷଣ କରିଥିଲେ, ସେହି ରାଜପଥରେ ହିଂସାର ରକ୍ତାକ୍ତ ଶକଟ ସଗର୍ବରେ ପରିଚାଳିତ ହୋଇପାରେ । ମନୁଷ୍ୟ ସମାଜରେ ଏ କି ଅଦ୍ଭୁତ ବ୍ୟାପାର, ତାହା ସହଜରେ ହୃଦୟଙ୍ଗମ କରିହେବ ନାହିଁ ।

୧୨

କେବେ ଶାନ୍ତିର ଉତ୍ସ, କେବେ ପୁଣି ପ୍ରଳୟଙ୍କରୀ ସମରରୂପକ ଝଡ଼ ଝଞ୍ଜା ମୋ ବକ୍ଷରେ ବହିଯାଇଛି, ତା'ର ଇୟତ୍ତା ନାହିଁ । ରାଜବଂଶର ଉତ୍‌ଥାନ ପତନ ଦେଖି ଦେଖି, ତାହା ମୋ ପକ୍ଷରେ ଏକ ସାଧାରଣ ଘଟଣା ହୋଇଗଲା । କିନ୍ତୁ ଗଙ୍ଗାବଂଶୀୟ ରାଜାମାନଙ୍କ ଅମଳରେ ସେମାନଙ୍କ ଗୌରବପୂର୍ଣ୍ଣ ଶାସନ ତଥା ଅଭିମାନ କୌଣସି ପ୍ରକାର କ୍ଷୁର୍ଣ୍ଣ ହୋଇ ନଥିଲା; ବରଂ ସୁଯୋଗ୍ୟ ଶାସକ ଲାଭକରି ଉତ୍ତରୋତ୍ତରବୃଦ୍ଧି ଲାଭ କରିଥିଲା । ସେ ବଂଶର ରାଜନ୍ୟବର୍ଗ କ୍ରମେ ଶକ୍ତିସଞ୍ଚୟ କରି ମହେନ୍ଦ୍ରାଚଳର ଉଭୟ ପାର୍ଶ୍ୱରେ ପ୍ରଶସ୍ତ ଭୂଖଣ୍ଡ ଅଧିକାର କରି "କଳିଙ୍ଗାଧିପତି" ଉପାଧିରେ ଭୂଷିତ ହୋଇଥିଲେ ।

ତାଙ୍କ ରାଜ୍ୟର ଉତ୍ତରକୁ କୋଙ୍ଗୋଦ ଓ ତୋଷଳୀ ରାଜ୍ୟ ବିସ୍ତୃତ ଥିଲା । ସେଠାରେ ଶୈଳୋଦ୍ଭବ ରାଜ୍ୟମାନଙ୍କ ପତନ ପରେ ପୂର୍ବ ଭାରତରୁ ଆସି ଭୌମବଂଶୀୟ ରାଜାମାନେ ଶାସନବିସ୍ତାର କରିବାକୁ ଲାଗିଲେ । ସେମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ବୈତରଣୀକୂଳସ୍ଥ ବିରଜାନଗରୀ ଓ ଗୁହେଶ୍ୱର ପାଟକରେ ରାଜଧାନୀ ନିର୍ମାଣ କରିଥିଲେ । ସେମାନେ ନିଜ ବଂଶର ମର୍ଯ୍ୟାଦା ସ୍ୱରୂପ ଗୋଟିଏ ସ୍ୱତନ୍ତ୍ର 'ଅବ୍ଦ' ବା 'ସମ୍ବତ୍' ବ୍ୟବହାର କରୁଥିଲେ ।

ବହୁ ଶ୍ରମଣ ଓ ବୌଦ୍ଧଭିକ୍ଷୁ ତାଙ୍କ ଆଶ୍ରୟ ଲାଭକରି ତୋଷଳୀରେ ଅବସ୍ଥାନ କରୁଥିଲେ । ସେମାନଙ୍କ ଅମଳରେ ଖଣ୍ଡଗିରିର ପ୍ରାଧାନ୍ୟ ପୁଣି ବୃଦ୍ଧି ଲାଭକଲା । ସେଠାରେ ବୌଦ୍ଧ ଓ ଜୈନ ସନ୍ନ୍ୟାସୀମାନେ ସୁଖରେ କାଳାତିପାତ କରୁଥିଲେ । ସେମାନଙ୍କଜ୍ଞାନ ଓ ପ୍ରତିଭାର ଖ୍ୟାତି ଏତେଦୂର ବ୍ୟାପିଥିଲା ଯେ, ସୁଦୂର ଚୀନସମ୍ରାଟ ମଧ୍ୟ ସେଥିରେ ମୁଗ୍ଧହୋଇ ଏ ଦେଶରୁ କେତେକ ଯୋଗୀ ଓ କେତେଖଣ୍ଡି ମୂଲ୍ୟବାନ୍ ପବିତ୍ରଗ୍ରନ୍ଥ ହାସ୍ତଗତ ଆଦାନପ୍ରଦାନ ସୂତ୍ରରେ ସ୍ୱରାଜ୍ୟକୁ ନେବାଲାଗି ନିମନ୍ତ୍ରଣକଲେ । ଏ ଦେଶରେ ଯୋଗୀମାନଙ୍କ ମଧ୍ୟରେ ଏପରି ଅଦ୍ଭୁତଶକ୍ତି ସମ୍ପନ୍ନ କେତେକ ବିଦ୍ୱାନ ଥିଲେ, ଯେଉଁମାନେ ସ୍ୱ ପ୍ରତିଭାବଳରେ 'ଅମରବିଦ୍ୟା' ଆୟତ୍ତ କରିଥିଲେ । ତେଣୁ ଦୂରଦେଶର ବହୁ ପଣ୍ଡିତ ଓ ରାଜା ଏ ଦେଶପ୍ରତି ବିଶେଷ ଆକୃଷ୍ଟ ହୋଇ ପଡ଼ିଲେ ।

ଭୌମ ରାଜବଂଶର ପ୍ରଥମରାଜା ଉନ୍ମତ୍ତ କେଶରୀ ଜଣେ ଅଲୌକିକ ଶକ୍ତିସମ୍ପନ୍ନ ବୀରଥିଲେ । ତାଙ୍କର ସାହାସ ଓ ବୀରତ୍ୱ ସମ୍ମୁଖରେ ବହୁରାଜା ମସ୍ତକ ଅବନତ କରିଥିଲେ । ତାଙ୍କ ଅଧୀନରେ ଯେଉଁ ସାମନ୍ତ ରାଜାମାନେ ଶାସନ କାର୍ଯ୍ୟ ଚଳାଉଥିଲେ, ସେମାନଙ୍କ ମଧ୍ୟରେ ଭଞ୍ଜ, ନନ୍ଦୋଦ୍ଭବ, ଶୁଲ୍କୀ, ତୁଙ୍ଗ, ବରାହ, ନାଗ ଆଦି ରାଜବଂଶ ପ୍ରଧାନ । ମହେନ୍ଦ୍ରାଚଳର ଉତ୍ତରଭାଗରେ ସେତେବେଳେ ଗଙ୍ଗ ବଂଶର ଗୋଟିଏ ଶାଖା ରାଜତ୍ୱ କରୁଥିଲା । ସେ ବଂଶଟି ମଧ୍ୟ ଭୌମବଂଶର ଆନୁଗତ୍ୟ ସ୍ୱୀକାର କରନ୍ତେ, ଭୌମରାଜ୍ୟର ଦକ୍ଷିଣସୀମା ମହେନ୍ଦ୍ରାଚଳ ପର୍ଯ୍ୟନ୍ତ ପ୍ରସାରିତ ହୋଇଥିଲା ।

ଭୌମବଂଶୀୟ ରାଜନ୍ୟବର୍ଗ ବୌଦ୍ଧଧର୍ମପ୍ରତି ଏତେଦୂର ଅନୁପ୍ରାଣିତ ହୋଇଥିଲେ ଯେ, ସେମାନେ ପରମ ସୌଗତ' ପରମ ତଥାଗତ' ପ୍ରଭୃତି ଉପାଧି ବ୍ୟବହାର କରୁଥିଲେ । ସେ ବଂଶର ବହୁ ଖ୍ୟାତନାମା ରାଜାମାନଙ୍କ ମଧ୍ୟରେ ଶୁଭଙ୍କର, ଶାନ୍ତିକର ଲଳିତହାର ଓ କୁସୁମହାର ପ୍ରଭୃତି ରାଜାଙ୍କନାମ ଉଲ୍ଲେଖଯୋଗ୍ୟ । ଶାନ୍ତିକରଙ୍କ ଶାସନରେ ପ୍ରଜାପୁଞ୍ଜ ଅତ୍ୟନ୍ତସୁଖ ଓ ଶାନ୍ତିରେ ବାସ କରୁଥିଲେ । ତାଙ୍କ ଅମଳରେ ଖଣ୍ଡଗିରିଠାରେ କେତେକ ଜୈନପଣ୍ଡିତ ଓ ତନ୍ତ୍ରଜ୍ଞ ଅବସ୍ଥାନ କରୁଥିଲେ । ରାଜଭକ୍ତେକରୂପେ 'ନନ୍ନଟ' ଓ ତାଙ୍କପୁତ୍ର 'ଭୀମଟ'ଙ୍କର ସୁଖ୍ୟାତି ଚତୁର୍ଦ୍ଦିଗରେ ବିସ୍ତାରଲାଭ କରିଥିଲା ।

ସେତେବେଳେ ମହେନ୍ଦ୍ରର ଉତ୍ତରାର୍ଦ୍ଧ ଶ୍ୱେତକ ନାମରେ ପରିଚିତ ଥିଲା । ସେଠାରେ ଗଙ୍ଗାବଂଶର ଗୋଟିଏ ଶାଖା ଭୌମମାନଙ୍କ ଅଧୀନରେ ରାଜତ୍ୱ କରୁଥିଲେ । ସେ ବଂଶର ଜୟବର୍ମା ନାମକ ଜଣେ ଖ୍ୟାତିସମ୍ପନ୍ନ ରାଜବୈଦ୍ୟ ନନ୍ନଟଙ୍କୁ କୋଙ୍ଗୋଦରେ କେତେଖଣ୍ଡି ଗ୍ରାମଦାନ କରିଥିଲେ । ସେଥିଲାଗି ଉନ୍ମତ୍ତକେଶରୀଙ୍କଠାରୁ ସ୍ୱୀକୃତିଲାଭ କରିବା ନିମିତ୍ତ ସେ ଦୂତପ୍ରେରଣ କରିଥିଲେ ।

ଭୌମରାଜବଂଶ ପ୍ରାୟ ଦ୍ୱିଶତବର୍ଷ ତୋଷଳୀରେ ରାଜତ୍ୱ କରୁଥିଲେ । ତା'ପରେ ସେମାନଙ୍କ ପତନର ସୂତ୍ରପାତ ହୋଇଥିଲା । କାରଣ ସେହି ବଂଶର ଶେଷଭାଗରେ କେତେଜଣ ରାଣୀ ପରସ୍ପରମଧ୍ୟରେ କଳହକରି ରାଜ୍ୟଟିକୁ ଭାଗଭାଗ କରି ଦେଇଥିଲେ ଏବଂ ସେମାନେ ସ୍ୱତନ୍ତ୍ର କର୍ମଚାରୀମାନଙ୍କ ଦ୍ୱାରା ନିଜ ନିଜ ଅଞ୍ଚଳର ଶାସନକାର୍ଯ୍ୟ ଚଳାଇବାକୁ ଚେଷ୍ଟା କରିଥିଲେ । ତେଣୁ ରାଜ୍ୟର ଶାସନକ୍ଷମତା କେତେଜଣ ରାଜକର୍ମଚାରୀଙ୍କ ହାତରେ ରହିଲା । ଫଳରେ ପ୍ରଜାକୁଳ ସ୍ୱେଚ୍ଛାଚାରୀ କର୍ମଚାରୀଙ୍କଦ୍ୱାରା ଅତ୍ୟାଚାରିତ ହେଲେ । ପ୍ରଜାମାନଙ୍କ ମଧ୍ୟରେ ଅସନ୍ତୋଷର ବହ୍ନି ଜଳିଉଠି ରାଜବଂଶର ଗୌରବକୁ ଗ୍ରାସକଲା ।

ଭୌମମାନଙ୍କ ସହିତ ଦକ୍ଷିଣକୋଶଳର ସୋମବଂଶୀୟ ରାଜାମାନେ ବୈବାହିକ ସୂତ୍ରରେ ବନ୍ଧୁତା ସ୍ଥାପନ କରିଥିଲେ । ଭୌମବଂଶୀୟା ରାଣୀ ତ୍ରିଭୁବନ ମହାଦେବୀ ଥିଲେ ସୋମକୁଳତିଳକ ଯଯାତିଙ୍କର କନ୍ୟା । ସେ ଯଯାତିଙ୍କର ଅନ୍ୟନାମ ଥିଲା ସ୍ୱଭାବତୁଙ୍ଗ । ସେ 'କୋଶଳାଧୀଶ୍ୱର' ଉପାଧିଲାଭ କରିଥିଲେ । ଭୌମବଂଶରେ ସ୍ତ୍ରୀଶାସନର ପ୍ରବର୍ତ୍ତନ ହେବା ଦେଖି ଚେଦୀ-ମାନେ ତୋଷଳୀକୁ କବଳିତ କରିବାଲାଗି ପ୍ରସ୍ତୁତ ହେଉଥିଲେ । ଚେଦୀବଂଶର ରାଜା ଲକ୍ଷ୍ମଣରାଜ ଏକଦା ସୁଯୋଗ ଲାଭକରି ଓଡ୍ର (ଉତ୍କଳ) ଦେଶ ଜୟକରି ସେଠାରୁ ଗୋଟିଏ କାଳୀୟମୂର୍ତ୍ତି ନିଜ ରାଜ୍ୟକୁ ନେଇ ଯାଇଥିଲେ । ଏଣୁ ସେହି ଅପମାନର ପ୍ରତିଶୋଧ ନିମିତ୍ତ ମହାରାଜା ଯଯାତି ସ୍ୱଭାବତୁଙ୍ଗ ହୈହୟ-ମାନଙ୍କ ରାଜଧାନୀ ପ୍ରତି ଦଣ୍ଡଯାତ୍ରା ଆରମ୍ଭକଲେ । ସେତେବେଳେ ଦକ୍ଷିଣକୋଶଳର ବହୁ ପାର୍ବତ୍ୟ ସୈନ୍ୟ ତାଙ୍କ ଯୁଦ୍ଧଯାତ୍ରାରେ ଅଂଶ ଗ୍ରହଣ କରିଥିଲେ । ଦକ୍ଷିଣକୋଶଳର ବଳଶାଳୀ ସେନା ଓ ସୁଦକ୍ଷ ପଣ୍ଡିତମଣ୍ଡଳଙ୍କ ଦ୍ୱାରା ଚେଦୀମାନେ ପରାସ୍ତହେଲେ । ତା'ପରେ ସେମାନଙ୍କ ରାଜଧାନୀ ଭଗ୍ନସ୍ତୂପରେ ପରିଣତ ହେଲା ।

ତୋଷଳୀରାଜ୍ୟ ପୂର୍ବରୁ ଦୁଇଭାଗରେ ବିଭକ୍ତ ହୋଇଥିଲା । ତାହାର ନାମଥିଲା ଉତ୍ତର ତୋଷଳୀ ଓ ଦକ୍ଷିଣ ତୋଷଳୀ । ଉତ୍ତର ତୋଷଳୀରେ ତ୍ରିଭୁବନ ମହାଦେବୀ ଓ ଧର୍ମଦେବୀ ରାଜତ୍ୱ କରୁଥିଲା ବେଳେ, ଦକ୍ଷିଣତୋଷଳୀ ଦଣ୍ଡୀମହାଦେବଙ୍କ ଶାସନା-ଧୀନରେ ଥିଲା । ତାଙ୍କ ସଭାରେ ବହୁପଣ୍ଡିତ ଓ କବି ଅବସ୍ଥାନ କରି ଗ୍ରନ୍ଥମାନ ରଚନା କରୁଥିଲେ । ତାଙ୍କର ଅମଳରେ ବୌଦ୍ଧଧର୍ମ ଅନେକ ଶାଖାପ୍ରଶାଖାରେ ବିସ୍ତାର-ଲାଭ କରିଥିଲା । ସେହି ଶାଖାଗୁଡ଼ିକ ମଧ୍ୟରେ ଗୋଟିଏ ଶାଖା ହେଉଛି 'ବଜ୍ରଯାନ' ଏଥିରୁ କାଳକ୍ରମେ ବୈଷ୍ଣବ ଧର୍ମାନ୍ତର୍ଗତ 'ସହଜିୟା' ସମ୍ପ୍ରଦାୟର ସୃଷ୍ଟି ହୋଇଥିଲା । ସେହି ସମ୍ପ୍ରଦାୟ ପକ୍ଷରୁ ଦଣ୍ଡୀମହାଦେବୀ 'ପରମବୈଷ୍ଣବୀ' ଉପାଧି ପ୍ରଦତ୍ତ ହୋଇଥିଲେ ।

ଭୌମରାଜାମାନଙ୍କ ରାଜତ୍ୱକାଳରେ ମୋର କଳେବର ଉନ୍ନତିର ଶିଖରରେ ଉପନୀତ ହୋଇଥିଲା । ବହୁ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରନିର୍ମାଣ ଓ ଦେବଦେବୀଙ୍କ ପ୍ରତିଷ୍ଠା ତାଙ୍କ ରାଜତ୍ୱର ଏକ ପ୍ରଧାନ କାର୍ଯ୍ୟଥିଲା । ରାଜାମାନଙ୍କ ଆଦେଶରେ ଅନେକ କଳାପୂର୍ଣ୍ଣ ମୂର୍ତ୍ତି ଲଳିତଗିରି, ଖଣ୍ଡଗିରି ଓ ବାରଜା ଆଦି ସ୍ଥାନରେ ପ୍ରତିଷ୍ଠିତ ହୋଇଥିଲେ । କାରଣ ସେହିସେହି ସ୍ଥାନମାନଙ୍କରେ ସେତେବେଳେ ବହୁ ଧର୍ମ ପ୍ରଚାରକ ଅବସ୍ଥାନ କରି ଦେଶରେ ଧର୍ମ-ପ୍ରବର୍ତ୍ତନ କରୁଥିଲେ । ଭୌମମାନଙ୍କ ଉନ୍ନତିରେ ପ୍ରବର୍ତ୍ତିତ ଧର୍ମର ସ୍ୱରୂପ ଓ ଗତି ଯେତେବେଳେ ପ୍ରବର୍ତ୍ତିତ ହେଲା, ସେତେବେଳେ ଏ ଦେଶରେ 'କାପାଳିକଧର୍ମ' ବିଶେଷଭାବରେ ପ୍ରସାରଲାଭ କରିଥିଲା । ବହୁବିଧ ଦେବମୂର୍ତ୍ତି ଗଠିତ ହୋଇ ସ୍ଥାନେ ସ୍ଥାନେ ପୂଜିତହେଲେ । କାପାଳିକମାନେ ଅଦ୍ଭୁତ ଶକ୍ତିସମ୍ପନ୍ନ

ଯୋଗୀରୂପେ ଆତ୍ମପ୍ରକାଶ କରିଥିବାରୁ ପ୍ରଜାମାନେ ସେମାନଙ୍କୁ ଅତ୍ୟନ୍ତ ଭୟ କରୁଥିଲେ । ସେହି କାପାଳିକଙ୍କ ବିରୁଦ୍ଧରେ ରାଜାମାନେ କୌଣସି ବ୍ୟବସ୍ଥା କରିବାତ ଦୂରର କଥା; ବରଂ ସେମାନଙ୍କୁ ଭୟକରି ସେମାନଙ୍କ ଇଚ୍ଛାନୁରୂପ କାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ । ତାହାଫଳରେ ଧର୍ମନାମରେ ଘୋର ବ୍ୟଭିଚାର ଏ ଦେଶରେ ବ୍ୟାପିଥିଲା । ସାଧୁତା ଓ ନିର୍ମଳଜ୍ଞାନର ପ୍ରସାର ପ୍ରାୟ ଏକାବେଳେକେ ଲୋପ ପାଇ ଯାଇଥିଲା ।

ସେହି ଦୁର୍ନୀତିର ଫଳସ୍ୱରୂପ ଭୌମରାଜବଂଶ ଧ୍ୱଂସ ମୁଖରେ ପତିତ ହେଲା ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । କାରଣ ରାଜ୍ୟରେ ଧର୍ମନାମରେ ଦୁର୍ନୀତି ପ୍ରସାରଲାଭ କଲେ ରାଷ୍ଟ୍ରର ଧ୍ୱଂସ ଅନିବାର୍ଯ୍ୟ । ରାଷ୍ଟ୍ରର ନିୟନ୍ତ୍ରଣକାରୀରୂପେ ରାଜ୍ୟରୁ ପାପସମୂହର ଦୂରୀକରଣ ନିମିତ୍ତ ରାଜାହିଁ ବିଶେଷ ତତ୍ପରହେବା ଉଚିତ । ଭୌମବଂଶୀୟମାନେ ସେଥିପ୍ରତି ଦୃଷ୍ଟି ଦେଉନଥିବାରୁ, ସେହି ଦୁର୍ନୀତି ତାଙ୍କ ବଂଶପ୍ରତି ଅଭିଶାପ ସ୍ୱରୂପ କାର୍ଯ୍ୟକଲା । ଅନ୍ୟାୟର ଧ୍ୱଂସ ଯେ ଅବଶ୍ୟମ୍ଭାବୀ, ତାହା ଭୌମରାଜତ୍ୱରେ ଏ ଦେଶରେ ପ୍ରମାଣିତ ହେଲା ।

## ୧୩

ଭୌମ ରାଜବଂଶର ଅବସାନପରେ ମୋ ବକ୍ଷରେ ଯେଉଁ ତୋଷଳୀ ବା ଉତ୍କଳ-ରାଜ୍ୟ ଥିଲା, ତହିଁର ଚତୁର୍ଦ୍ଦିଗରେ ଘୋର ଅଶାନ୍ତି ଓ ବିଶୃଙ୍ଖଳାର ପରିସ୍ଥିତି ସୃଷ୍ଟି-ହେଲା । ତେଣୁ ପ୍ରଜାପୁଞ୍ଜ ଓ ରାଜ୍ୟର ବିଜ୍ଞ କର୍ମଚାରୀବୃନ୍ଦ ପରାମର୍ଶ କରି ଦକ୍ଷିଣକୋଶଳର ଶକ୍ତିସମ୍ପନ୍ନ ରାଜା ଯଯାତିଙ୍କୁ ରାଜ୍ୟର ଶାସନଭାର ଗ୍ରହଣ କରିବା ଲାଗି ସାଦରେ ଅଭି-ନନ୍ଦନ ଜଣାଇଲେ । ଯଯାତିଙ୍କର ରାଜଧାନୀ ବିରଜାକ୍ଷେତ୍ରରେହିଁ ସ୍ଥାପିତହେଲା । ସେ ଦେଶରେ ସର୍ବବିଧ ସାମାଜିକ ସଂସ୍କାର ନିମିତ୍ତ ସେଠାରେ ଏକ ବିରାଟ ଅଶ୍ୱମେଧଯଜ୍ଞ ଅନୁଷ୍ଠାନ କଲେ । ସେହି ଯଜ୍ଞର ପୁରୋଧା ଓ ହୋତୃରୂପେ ବରଣ କରି ସେ କାନ୍ୟକୁ-ବଜରୁ ବହୁ ପଣ୍ଡିତ ବ୍ରାହ୍ମଣମାନଙ୍କୁ ଆଣି ଶାସନଦାନ କରିଥିଲେ । ସେହିଦିନଠାରୁ ଏ ଦେଶରେ ବ୍ରାହ୍ମଣଧର୍ମର ପୁନରୁତ୍ଥାନ ଘଟିଲା । ସୁଯୋଗକୁ ଠିକ୍ ସେହି ସମୟରେ ଦକ୍ଷିଣକୋଶଳ ସହିତ କୋଙ୍ଗଦ ଓ ଉତ୍କଳର ସମ୍ମିଶ୍ରଣ ଘଟିଲା । ତାହାଫଳରେ ମୋର କଳେବର ଆଶାତୀତ ଭାବରେ ସମ୍ପ୍ରସାରିତ ହେଲା ।

ସୋମବଂଶୀରାଜାମାନେ ମୋ ବକ୍ଷରେ ବହୁ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ସମୂହ ନିର୍ମାଣ କରି ମୋର ସୌନ୍ଦର୍ଯ୍ୟ ବିଶେଷ ଭାବରେ ବୃଦ୍ଧି କରିଥିଲେ । ତାଙ୍କ ପୃଷ୍ଠପୋଷକତାରେ ଏ ଦେଶରେ ଅସଂଖ୍ୟ କବି, ପଣ୍ଡିତ, ଶିଳ୍ପୀ, କଳାକାର, ସଙ୍ଗୀତଜ୍ଞଙ୍କର ସମାବେଶ ଘଟିଲା ।

ଏହି ସୁବର୍ଣ୍ଣଯୁଗରେ ଭୁବନେଶ୍ୱରଠାରେ କୃତ୍ତିବାସଙ୍କର ଉତ୍ତୁଙ୍ଗ ମନ୍ଦିର ଗଠିତ ହୋଇଥିଲା । ସେ ସମୟ ମୋ ପକ୍ଷରେ ଅତି ସୌଭାଗ୍ୟକର ହୋଇ ମୁଁ ଅନୁଭବ କରୁଥିଲି । ଅସଂଖ୍ୟ ଶିଳ୍ପୀ ବହୁଦିନରେ ମନ୍ଦିରଟିର ନିର୍ମାଣ ଶେଷ କରିଥିଲେ । ବିଶାଳ ପ୍ରସ୍ତରଚୟ କି ଉପାୟରେ ଉନ୍ନତ ମନ୍ଦିର ଶିଖର ଦେଶକୁ ଉତ୍ତୋଳିତ ହେଉଥିଲା, ତାହା ଶୁଣିଲେ ଆଜି ଲୋକେ ଆଶ୍ଚର୍ଯ୍ୟାଭିଭୂତ ହେବେ ।

ମନ୍ଦିରଠାରୁ ପ୍ରାୟ ଅର୍ଦ୍ଧକୋଶ ଦୂରରୁ କ୍ରମୋନ୍ନତ ଭାବରେ ଗୋଟିଏ ମୃତ୍ତିକାପଥ ନିର୍ମିତ ହେଲା । ସଦ୍ୟଣେ ବାଉଁଶ ଖଣ୍ଡ ଗୁଡ଼ିକରେ ସେଥିରେ ସମୁଦାୟ ଅଂଶ ଆଚ୍ଛାଦିତ ହୋଇଥିଲା । ତଦୁପରି ପ୍ରସ୍ତରମାନ ଉତ୍ତୋଳିତ ହୋଇ-ରଜ୍ଜୁରେ ତାହା ଆବଦ୍ଧ ହୋଇ ମନୁଷ୍ୟ କିମ୍ବା ବଳୀବର୍ଦ୍ଦ ସାହାଯ୍ୟରେ ସେହି କ୍ରମୋନ୍ନତ ମାର୍ଗରେ ବାଉଁଶଖଣ୍ଡ ଉପର ଦେଇ କାର୍ଯ୍ୟସ୍ଥଳକୁ ଟଣାଯାଇଥିଲା । ଏପରି ବହୁ କୌଶଳର ସହିତ ମନ୍ଦିରଟି ଦୀର୍ଘ କାଳରେ ପୂର୍ଣ୍ଣତା ଲାଭକଲା ।

ମନ୍ଦିରର ରତ୍ନମୁଦ ପଡ଼ିବାକୁ ଆଉ ଅଳ୍ପକାଳ ମାତ୍ର ଅବଶିଷ୍ଟ ଥାଏ, ସେହି ସମୟରେ ବହୁ ସୁଦକ୍ଷ ବିଜ୍ଞାଣୀ ତହିଁର ଗୋଟିଏ ଗୋଟିଏ ଅଂଶ ନେଇ ବିଭିନ୍ନ କାରୁକାର୍ଯ୍ୟପୂର୍ଣ୍ଣ ସୂକ୍ଷ୍ମ ମୂର୍ତ୍ତି ଓ ଦୃଶ୍ୟମାନ ନିର୍ମାଣ କରିବାରେ ନିଯୁକ୍ତହେଲେ । ସେମାନଙ୍କ ମଧ୍ୟରେ ଉନ୍ନତ ଧରଣର କାର୍ଯ୍ୟ କରିବା ଲାଗି ମଧ୍ୟ ପ୍ରତିଯୋଗିତା ଚାଲିଥିଲା । ଯେଉଁ ଶିଳ୍ପୀ ଉତ୍କୃଷ୍ଟ ସ୍ଥାପତ୍ୟ ନିର୍ମାଣ କରୁଥିଲେ, ସେ ରାଜକୀୟ ପୁରସ୍କାରର ଅଧିକାରୀ ହେଉଥିଲେ । ମନ୍ଦିରଗାତ୍ରରେ ସେହି ଚିରସ୍ଥାୟୀ ମଣ୍ଡନକୀସ୍ତା ସେମାନେ ଯେ କେବଳ ରାଜବର୍ତ୍ତିନ ଲୋଭରେ ସମ୍ପାଦନ କରୁଥିଲେ ତାହାନୁହେଁ, ବରଂ ସେମାନେ ଅକ୍ଷୟ ପୁଣ୍ୟ ଅର୍ଜନ ଉଦ୍ଦେଶ୍ୟରେ ତଥା ଦେଶରେ କୀର୍ତ୍ତିଧ୍ୱଜାକୁ ଉନ୍ନତ କରିବା ଲାଗି ମନୋନିବେଶପୂର୍ବକ ବଂଶପରମ୍ପରା ପ୍ରାପ୍ତ ବୃଦ୍ଧି ବିଦ୍ୟାର ପରକାଷ୍ଠା ଦେଖାଉଥିଲେ । ତେଣୁ ମନ୍ଦିର ନିର୍ମାଣ କାର୍ଯ୍ୟ ଅଧିକ କ୍ଷିପ୍ରତାର ସହିତ ଚାଲିଥିଲା । ରାଜ୍ୟର ପ୍ରଜାପୁଞ୍ଜ ଉତ୍କଣ୍ଠିତ ଭାବରେ ମନ୍ଦିର ନିର୍ମାଣର ଶେଷ ଦିନଟିକୁ ଅପେକ୍ଷା କରି ରହିଥିଲେ ।

ବର୍ଷପରେ ବର୍ଷ ଅତୀତ ହୋଇଗଲା । ଗଠନ କାର୍ଯ୍ୟ ଅବିରାମ ଗତିରେ ଦକ୍ଷତାର ସହିତ ଚାଲିଲା । ପରିଶେଷରେ ଯେଉଁଦିନ ରତ୍ନମୁଦ ପଡ଼ି ମନ୍ଦିର ନିର୍ମାଣ

କାର୍ଯ୍ୟ ପରିପୂର୍ଣ୍ଣ ହେଲା । ସେ ଦିନଟି ମୋ ପକ୍ଷରେ ଏକ ଉତ୍ସବର ଦିନ । ମୋର ସନ୍ତାନମାନେ ସେଦିନ ମନେକଲେ ସତେ ଯେପରି ସ୍ୱୟଂ କୃତ୍ତିବାସ ସେ ମହାକାର୍ଯ୍ୟଟିକୁ ସମ୍ପନ୍ନ କରିଦେଇଛନ୍ତି ।

ଶ୍ରୀମନ୍ଦିରରେ ମହାଲିଙ୍ଗଙ୍କ ପ୍ରତିଷ୍ଠିତ ହେବା ଦିନଟି ମଧ୍ୟ ଏକ ସ୍ମରଣୀୟ ଦିବସ । ସହସ୍ର ସହସ୍ର ସଂଖ୍ୟକ ବ୍ରାହ୍ମଣଙ୍କ ବେଦଧ୍ୱନି ସଙ୍ଗେ ଅସଂଖ୍ୟ ବାଦ୍ୟ ଓ ଶଙ୍ଖ ହୁଳହୁଳି ଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇ ଜନତାର ପ୍ରାଣରେ ଅପୂର୍ବ ପୁଲକ ଜାତ କରିଥିଲା । ସେତେବେଳେ ଜଣାଗଲା, ସତେ ଯେପରି ସମଗ୍ର ଦେଶଟି ବୈଦିକ ବିଧିରେ ନବପ୍ରାଣ ଲାଭକରିଛି । କୃତ୍ତିବାସଙ୍କ ସେବା ନିମିତ୍ତ ଶତଶତ ସେବକ ନିଯୁକ୍ତ ହେଲେ । ସେମାନଙ୍କ ବେତନ ସ୍ୱରୂପ ବଂଶପରମ୍ପରା କ୍ରମେ ରାଜାଙ୍କ ପକ୍ଷରୁ ବୃତ୍ତିମାନ ଖଞ୍ଜି ଦିଆଗଲା ।

ଗୋଟିଏ କ୍ଷୁଦ୍ର ଜନବସତି ମନ୍ଦିରର ଚତୁର୍ଦ୍ଦିଗରେ ଧୀରେ ଗଠିତ ହେଲା । ପାଠଶାଳା, ପୁଷ୍କରିଣୀ, କୂପ, ଧର୍ମଶାଳା, ସହିତ ଅସଂଖ୍ୟ ମନ୍ଦିର (ପ୍ରାଚୀନ ଓ ନୂତନ) ଭୁବନେଶ୍ୱରର ଶୋଭା ବର୍ଦ୍ଧନ କଲା । ଅଦୂରରେ ପ୍ରାଚୀନ ଦୁର୍ଗ ଶିଶୁପାଳ ଗଡ଼ର ଉଚ୍ଚ ପ୍ରାଚୀର, ନିମ୍ନରେ ଗନ୍ଧବତୀର ସ୍ୱଚ୍ଛ ଜଳପ୍ରବାହ; ଏକଦିଗରେ ଧଉଳି ପାହାଡ଼ ଓ ଅନ୍ୟ ଦିଗରେ ଖଣ୍ଡଗିରିର ବୌଦ୍ଧବିହାର ତଥା ଜୈନକୀର୍ତ୍ତିରାଜି ଏବଂ ମଧ୍ୟଭାଗରେ କୃତ୍ତିବାସଙ୍କ ଉତ୍ତୁଙ୍ଗମନ୍ଦିର ଭୁବନେଶ୍ୱରର ଶୋଭାବୃଦ୍ଧି କରିବା ସଙ୍ଗେ ସଙ୍ଗେ କାଶୀଧାମ ସହିତ ସ୍ପର୍ଦ୍ଧା କଲା । ଏଣୁ ପଣ୍ଡିତମାନେ ଭୁବନେଶ୍ୱର କ୍ଷେତ୍ରର ମାହାତ୍ମ୍ୟ ରଚନାକରି ତାକୁ ଦ୍ୱିତୀୟ କାଶୀ ରୂପେ ବର୍ଣ୍ଣନାକଲେ । ବୈତାଳିକମାନେ ସେହି ମାହାତ୍ମ୍ୟ ଦେଶ ବିଦେଶରେ ଗାନ କରିବା ଫଳରେ ଭୁବନେଶ୍ୱର କ୍ଷେତ୍ର ରୂପେ ସର୍ବତ୍ର ବିଖ୍ୟାତ ହେଲା । ତାହା ଫଳରେ ମୋ କୋଳରେ ଆର୍ଯ୍ୟବସତି ସ୍ଥାପିତ ହେବାର ଆଉ କୌଣସି ବାଧା ରହିଲା ନାହିଁ । ବହୁଗ୍ରାମ, ଶାସନ ଓ ଜନବସତି ପ୍ରତିଷ୍ଠିତ ହୋଇ ରାଜ୍ୟଟି ସମୃଦ୍ଧିଶାଳୀ ହୋଇଉଠିଲା । ଶିକ୍ଷାର ପ୍ରସାର ହେତୁରୁ ଲୋକମାନେ ଦେଶର ସର୍ବବିଧ ଉନ୍ନତିରେ ଅଗ୍ରସରହେଲେ । ବିଦେଶାଗତ ଯାତ୍ରୀମାନେ କୃତ୍ତିବାସଙ୍କ ଉଦ୍ଦେଶ୍ୟରେ ପ୍ରଚୁର ଅର୍ଥ ମୁକ୍ତ ହସ୍ତରେ ଦାନକଲେ । ତାହା ଫଳରେ ମଧ୍ୟ ରାଜ୍ୟର ଧନଭଣ୍ଡାର ଭରପୂର ହେବାକୁ ଲାଗିଲା । ଦେଶରେ ସର୍ବତ୍ର ଜଳାଶୟ, କୂପ, ବାପୀ ଆଦି ଖନନ କରାଯାଇ ଜଳସେଚନର ସମସ୍ତ ପ୍ରକାର ସୁବିଧା ହୋଇ ଯାଆନ୍ତେ, ଅପର୍ଯ୍ୟାପ୍ତ ପରିମାଣ ଶସ୍ୟ ଉତ୍ପନ୍ନ ହେଲା । ସର୍ବବିଧ ସୁଖସମୃଦ୍ଧିର ପ୍ରାଚୁର୍ଯ୍ୟରେ ମୋର ସନ୍ତାନଗଣ ପରମ ସୁଖରେ କାଳଯାପନ କଲେ ।

କିନ୍ତୁ ସୁଖ କେବେହେଲେ ଚିରସ୍ଥାୟୀ ହୋଇ ରହେନାହିଁ । ଉଜ୍ଜ୍ୱଳ ଦିବାଲୋକପରେ ଯେପରି କାଳରାତ୍ରୀ ମାଡ଼ି ଆସେ, ସେହିପରି ସୁଖପରେ ଦୁଃଖର

ଉପସ୍ଥିତ ଅବଶ୍ୟମ୍ଭାବୀ । ସେହି ପରମ୍ପରାରେ ମୋର ସେହି ଅତୁଳ ବିଭବରାଶି କାଳର କବଳରେ ପଡ଼ି ଅଚିରେ ନଷ୍ଟ ହୋଇଗଲା ।

ସୋମବଂଶର ପତନକାଳ ଆସି ଉପସ୍ଥିତ ହେଲା । ସେ ବଂଶର ଶେଷରାଜା କର୍ଣ୍ଣକେଶରୀ ଦୁର୍ବଳ ହୋଇ ପଡ଼ିଲେ । ବିଳାସ ବ୍ୟସନରେ ମଗ୍ନରହି ରାଜ୍ୟର ପ୍ରଧାନ କର୍ମଚାରୀଗଣ ନିଜ ନିଜ କର୍ତ୍ତବ୍ୟରେ ଘୋର ଅବହେଳାକଲେ । ତାହାଫଳରେ ରାଷ୍ଟ୍ରର ଦୃଢ଼ତା ଆପଣାଛାଏଁ ନଷ୍ଟ ହୋଇଗଲା । ସେହି ସୁଯୋଗରେ ପଡ଼ୋଶୀ ଶତ୍ରୁମାନେ ଉତ୍କଳ ଜୟ କରିବାକୁ ଉଦ୍ୟତ ହେଲେ ।

କଳିଙ୍ଗରେ ସେତେବେଳେ ମହାରାଜା ରାଜରାଜ ଦେବ ଅମିତ ବିକ୍ରମରେ ରାଜତ୍ୱ କରୁଥିଲେ । ବନପତିନାମକ ତାଙ୍କର ଜଣେ ସୁଦକ୍ଷ ବ୍ରାହ୍ମଣ ସେନାପତି ଥିଲେ । ତାଙ୍କର ଅପୂର୍ବ ଚତୁରତା, ବୁଦ୍ଧିମତ୍ତା ଓ ରଣକୌଶଳରେ ଦକ୍ଷତା ଯୋଗୁ ରାଜରାଜ ଦେବ ଅନେକ ରାଜ୍ୟ ଅନାୟାସରେ ଜୟ କରିଥିଲେ । ସେ ଖିମୁଣ୍ଡି, ଖିଡ଼ିସିଙ୍ଗି, କୋଶଳ ଓ ଉଡ୍ରରାଜ୍ୟ କରଗତ କରିସାରି ଉତ୍କଳ ପ୍ରତି ଦଣ୍ଡଯାତ୍ରା ଆରମ୍ଭକଲେ । ସୁଶିକ୍ଷିତ ଅମିତବଳଶାଳୀ କଳିଙ୍ଗ ସେମାନଙ୍କ ସମ୍ମୁଖରେ ଉତ୍କଳର ସୈନ୍ୟବାହିନୀ ବେଶୀଦିନ ତିଷ୍ଠି ପାରିଲନାହିଁ । ମହାରାଜା କର୍ଣ୍ଣକେଶରୀ ପରିଶେଷରେ ନିରାଶ ହୋଇ ପଡ଼ୋଶୀ ଗୌଡ଼ଦେଶକୁ ପଳାୟନ କଲେ ।

ସେ ସମୟରେ ପାଳବଂଶୀୟ ରାଜାମାନଙ୍କ ଦ୍ୱାରା ଗୌଡ଼ଦେଶ ଶାସିତ ହେଉଥିଲା । ସେ ବଂଶର ଜଣେ ସୁଦକ୍ଷ ରାଜା ରାମପାଳଙ୍କଠାରେ କର୍ଣ୍ଣକେଶରୀ ଶରଣାପନ୍ନହେଲେ । ସେତେବେଳେ ଗୌଡ଼ରାଜାଙ୍କ ଅଧୀନରେ ଦଣ୍ଡଭୁକ୍ତି (ଆଧୁନିକ ମେଦିନାପୁର, ମାନଭୂମ ଜିଲ୍ଲା) ନାମ ଏକ ସାମନ୍ତ ରାଜ୍ୟଥିଲା । ସେଠାକାର ରାଜା ଜୟସିଂହ ଗୌଡ଼ ନରେଶ ରାମପାଳଙ୍କଠାରୁ ଆଦେଶପାଇ କର୍ଣ୍ଣକେଶରୀଙ୍କୁ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କଲେ । ତେଣୁ ଅସଂଖ୍ୟ ସୈନ୍ୟ ସହିତ କର୍ଣ୍ଣକେଶରୀ ଓ ଜୟସିଂହ ଦୁହେଁ ରାଜରାଜଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଲେ । ଶେଷରେ କଳିଙ୍ଗସେନା ପରାସ୍ତ ହୋଇ ନିଜ ରାଜ୍ୟକୁ ପଳାୟନକଲେ ଏବଂ କର୍ଣ୍ଣ-କେଶରୀ ସ୍ୱରାଜ ସିଂହାସନ ପୁଣି ହସ୍ତଗତକଲେ ।

କିନ୍ତୁ ସେ ଅବସ୍ଥା ବେଶୀଦିନ ସ୍ଥାୟୀହୋଇ ରହିଲନାହିଁ । କିଛିକାଳ ଲାଗି କର୍ଣ୍ଣକେଶରୀ ଶତ୍ରୁ ଉପଦ୍ରବରୁ ରକ୍ଷା ପାଇଲେ ସତ୍ୟ, ମାତ୍ର ବିଧାତାଙ୍କର ବିଧାନ ଅନ୍ୟ ପ୍ରକାରଥିଲା । ସେ ଘଟଣାର ଅଳ୍ପଦିନ ପରେ କଳିଙ୍ଗ ସିଂହାସନରେ ଅଭିଷିକ୍ତ ହେଲେ ମହାବୀର ଚୋଡ଼ଗଙ୍ଗଦେବ ଏବଂ କର୍ଣ୍ଣକେଶରୀଙ୍କ ଦୁର୍ଭାଗ୍ୟକ୍ରମେ ଠିକ୍ ସେତିକବେଳେ ରାମପାଳ ଇହଧାମ ତ୍ୟାଗ କରନ୍ତେ, ଉତ୍କଳର ଭାଗ୍ୟାକାଶରେ ବିପଦର ନୂତନ ଘନଘଟା ଘୋଟିଗଲା । ଗଙ୍ଗାକୁଳତିଳକ ମହାବୀର ଚୋଡ଼ଗଙ୍ଗ ଦେବ ଅପାର ସୈନ୍ୟବା

ସହିତ ଉତ୍କଳଦେଶ ଆକ୍ରମଣ କଲେ । ସେତେବେଳକୁ କର୍ଣ୍ଣକେଶରୀ ବୃଦ୍ଧ ଓ ଅସହାୟ ହୋଇ ପଡ଼ିଥିଲେ । ତେଣୁ ସେ ଚୋଡ଼ଗଙ୍ଗଙ୍କ ଯୁଦ୍ଧାନଳର ଲେଲିହାନ ଶିଖାର ଜ୍ୱାଳା ସହ୍ୟ କରି ନପାରି, ସେ ପତଙ୍ଗ ସଦୃଶ ପୋଡ଼ି ଛାରଖାର ହୋଇଗଲେ । ଉତ୍କଳବକ୍ଷରୁ ସେହିଦିନଠାରୁ ସୋମବଂଶର ରାଜତ୍ୱ ଚିରଦିନଲାଗି ଲୋପ ପାଇଲା । ତାହାପରେ ଚୋଡ଼ଗଙ୍ଗଦେବ କଳିଙ୍ଗ ସହିତ ଉତ୍କଳ ଓ କୋଶଳ ରାଜ୍ୟର ମିଶ୍ରଣ କରି ବିଶାଳ କଳିଙ୍ଗନାମରେ ମୋର ପୂର୍ଣ୍ଣସ୍ୱରୂପ ଗଠନକଲେ । ସେତେବେଳେ ମୋର କଳେବର ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବ୍ୟାପିଗଲା । ତା'ପରେ ମୁଁ ନିଜେ ଅନୁଭବ କଲି, ସତେ ଯେପରି କେଉଁ ସ୍ୱର୍ଗୀୟ ଆତ୍ମାର ସଞ୍ଜୀବନୀ ମନ୍ତ୍ରବଳରେ ମୁଁ ଉଜ୍ଜୀବିତ ହୋଇ ଉଠିଛି । ତା'ପରେ ପୂର୍ବଗୌରବ ତୁଳନାରେ ମୁଁ କିପରି ଅପାର ବିଭବ ରାଶିରେ ଯୁକ୍ତ ହେଲି, ତାହା ତୁମ୍ଭେମାନେ ଜାଣିଲେ ସ୍ତମ୍ଭୀଭୂତ ହୋଇଯିବ । ଆଜିସୁଦ୍ଧା ପୃଥିବୀ ଇତିହାସରେ ଅତି ଅଳ୍ପରାଜ୍ୟ ସେପରି ସୌଭାଗ୍ୟରେ ମଣ୍ଡିତ ହୋଇ ନିଜର ଶୁଭ୍ର ଯଶରାଶିକୁ ଜଗତ୍‌ବ୍ୟାପୀ କରାଇ ପାରିଛନ୍ତି !!!

* * *